# ବୈତରଣୀ

ବିରୂପାକ୍ଷ କର ବିରଚିତ

ଦ୍ୱିତୀୟ ସଂସ୍କରଣ

ବିରୂପାକ୍ଷ କର ସ୍ମୃତି ପରିଷଦ, ଓଡ଼ିଶା
ଭୁବନେଶ୍ୱର
୧୯୯୯

# VAITARANI

*by*
*Birupakshya Kar*

First Edition : 1932

Second Edition : 1999

Edited by : Dr. Rabindra Kumar Praharaj

Published by : Birupakshya Kar Smruti Parishad, Orissa
5012/5853, Gajapati Nagar
Bhubaneswar - 751 005

Printed at : Bholanath Press
Bomikhal, Bhubaneswar-10
Ph. : 580728

Price : Rupees Fifteen only.

# ନିବେଦନ

ଗତବର୍ଷ ପିତୃପକ୍ଷରେ ବୈତରଣୀରେ ତର୍ପଣ କଲାବେଳେ ବୈତରଣୀ ସମ୍ବନ୍ଧେ ଗୋଟିଏ କବିତା ଲେଖିବାକୁ ଇଚ୍ଛା ବଳିଲା । ଲେଖୁ ଲେଖୁ ବୈତରଣୀ କୂଳର ପ୍ରତିଷ୍ଠିତ ସ୍ଥାନ ସବୁର ମାହାତ୍ମ୍ୟ ଓ ଉତ୍କଳୀୟ ସ୍ୱାଧୀନ ରାଜ୍ୟର ପତନ ସଙ୍ଗେ ସଙ୍ଗେ ସେହି ମାହାତ୍ମ୍ୟର ଅଧଃପତନ ସମ୍ବନ୍ଧେ କିଛି ଲେଖିବାକୁ ପ୍ରଣୋଦିତ ହେଲି । ଫଳରେ କବିତା ଲେଖିବାକୁ ବସି ପୁରାଣ ଓ ଇତିହାସ ସମ୍ବଳିତ କାବ୍ୟ ଲେଖି ପକାଇଲି । ସର୍ବ ପ୍ରଥମେ କାର୍ବ୍ୟ ଲେଖିବାର କଳ୍ପନା ନଥିବା ହେତୁ ଯେଉଁ ପୀଠମାନ ପୁସ୍ତିକାରେ ସ୍ଥାନ ପାଇ ଅଛନ୍ତି ସେ ସବୁ ବେଳେ ବେଳେ ଧାରାବାହିକ ଭାବରେ ବର୍ଣ୍ଣିତ ହୋଇପାରି ନାହାନ୍ତି । ପୁନଶ୍ଚ ବୈତରଣୀ ନାମ ଦେଖି କେହି କେହି ପୁସ୍ତିକାରେ ବୈତରଣୀର ଉଭୟ ତୀରବର୍ତ୍ତୀ ସମସ୍ତ ସ୍ଥାନର ବର୍ଣ୍ଣନା ଆଶା କରି ପାରନ୍ତି । ମାତ୍ର ବୈତରଣୀ ତୀରବର୍ତ୍ତୀ ସମସ୍ତ ସ୍ଥାନ ସମ୍ବନ୍ଧେ ମୋର ଅଭିଜ୍ଞତା ନଥିବା କାରଣରୁ ଯେଉଁ ପୀଠ ଘେନି ବୈତରଣୀର ମହତ୍ତ୍ୱ ପୁରାଣ-ପ୍ରସିଦ୍ଧ କେବଳ ସେହି ପୀଠ ମଧ୍ୟରେ ମୁଁ ସୀମାବଦ୍ଧ ରହିଅଛି । ସହୃଦୟ ପାଠକବର୍ଗ ତ୍ରୁଟି ମାର୍ଜ୍ଜନା କରିବେ ।

। ଇତି ।

ବିରୂପାକ୍ଷ କର

# ଉତ୍ସର୍ଗ ପତ୍ର

ଉତ୍କଳୀୟ ରାଜନ୍ୟଗଣାଗ୍ରଗଣ୍ୟ ମଧୁପୁର
କିଲ୍ଲାଧୀଶ୍ୱର ଶ୍ରୀ ବୀରବର ନାରାୟଣ
ଚନ୍ଦ୍ର ଧୀର ନରେନ୍ଦ୍ରଙ୍କ କର-
କମଳରେ ଏହି କ୍ଷୁଦ୍ର ପୁସ୍ତିକା
ଖଣ୍ଡିଭକ୍ତି ଓ କୃତଜ୍ଞତାର
ନିଦର୍ଶନ ସ୍ୱରୂପ
ଅର୍ପଣ କଲି ।



# ଅବତରଣିକା

ଉତ୍କଳ ସାହିତ୍ୟ ଜଗତରେ ପ୍ରତ୍ନତତ୍ତ୍ୱବିତ୍ ବାବୁ ବିରୂପାକ୍ଷ କର, ବି.ଏଲ୍. ଜଣେ ସ୍ୱଦେଶପ୍ରେମିକ ସୁଲେଖକ ବୋଲି ପରିଚିତ । ସେ ମହାଶୟଙ୍କର ''ବୈତରଣୀ'' କାବ୍ୟ-ପାଣ୍ଡୁଲିପି ଏକାଧିକ ବାର ପଢ଼ିବାର ସୁଯୋଗ ପାଇଥିଲି । ମୁଁ ବିଦ୍ୟା ଓ ବହୁଦର୍ଶିତାରେ ଆପଣାକୁ ଅତ୍ୟନ୍ତ କ୍ଷୁଦ୍ର ଓ ହୀନ ମନେ କରୁଥିଲେ ସୁଦ୍ଧା ଧାଡ଼ିଏ ଦୁଇଧାଡି ଲେଖିବାକୁ ସାହସୀ ହୋଇଅଛି । ଅନ୍ତତଃ କବିଙ୍କର ଉଦାର ବ୍ୟବହାର ମୋତେ ସାହସୀ କରାଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୈତରଣୀ କୂଳରେ ମୁଁ ଆଜନ୍ମ ଲାଳିତ ପାଳିତ, ସେ ତରଙ୍ଗିଣୀ ମୋର ମାତୃସ୍ୱରୂପା । ବୈଦିକ, ପୌରାଣିକ, ଐତିହାସିକଯୁଗର କେତେ ସୁଖ ଦୁଃଖ ପବିତ୍ରସ୍ମୃତି ସେ ନାମରେ ଜଡ଼ିତ ହୋଇ ରହିଅଛି । ବାଲକାଳରୁ ତାହାରି କୋଳରେ କେତେ ଜାନିଯାତ୍ରା ମେଳା ମହୋତ୍ସବ ଦେଖିଛି ଓ ଦେଖୁଛି । ବୈତରଣୀ କୂଳସ୍ଥ ଯାଜପୁର ସେହି ସ୍ୱାଧୀନ ସୁବର୍ଣ୍ଣ ଯୁଗର ନରପତିମାନଙ୍କର ଓ ବୈଦିକ କାଳରୁ ନାନା ଧର୍ମର ଲୀଳାଭୂମି ଥିଲା । କେତେ ଯାଗ ଯଜ୍ଞର ପବିତ୍ର ଧୂମ ଏହାର କୂଳରୁ ଉଠି ଆକାଶକୁ ମେଘାବୃତ କରିଥିଲା । ଋଷିପ୍ରାଣ କେତେ ନୈଷ୍ଠିକ ଭୂଦେବମାନେ ଏହାରି ତଟଦେଶରେ ତପୋବନପରି ସ୍ଥାନରେ ଅବସ୍ଥାନ କରି କେତେ କେତେ ଶାସ୍ତ୍ର ରଚନା କରିଯାଇ ଅଛନ୍ତି । ବିଜୟୀ ସେନା ଓ ନାଗରିକମାନଙ୍କଦ୍ୱାରା ଏହିଠାରେ ଉତ୍କଳ ବୀରତ୍ୱର ପରାକାଷ୍ଠାର ସ୍ମାରକ ସ୍ୱରୂପ ଶୁଭସ୍ତମ୍ଭ ସ୍ଥାପନ ଦିନେ ଏହି ନଦୀ ''ରଙ୍ଗେ ତରଙ୍ଗ ଭ୍ରୂଭଙ୍ଗେ'' ଦେଖିଥିଲା ।

ଈଦୃଶୀ ସ୍ନେହମୟୀ ପୂତା ଜନନୀର ବନ୍ଦନା ମୋତେ ନିଶ୍ଚୟ ଭଲ ବୋଧହେବ । ତାହା ପୁଣି କରଙ୍କପରି ସୁରସିକ ସରଳପ୍ରାଣ କବିଙ୍କ ଲେଖା ବୋଲି ଯେତେବେଳେ ତାକୁ ପାଠକରିଛି ତାହା ମୋତେ ବାସ୍ତବିକ ଦ୍ୱିଗୁଣ ମଧୁର ବୋଧ ହୋଇଅଛି । ଯୌବନ ସମୟରେ ମା'ର ଏହି କୋଳରେ ବୁଲୁ ବୁଲୁ କଳ୍ପନା ରାଜ୍ୟକୁ ଯାଇ କେତେ ଭାବିଛି, କାନ୍ଦିଛି, ଗାଇଛି, ଲେଖିଛି ଓ ଚିରିଛି । ମୋର ସେହି କଳ୍ପନା ରାଜ୍ୟର ଆରାଧ୍ୟା ଦେବୀଙ୍କ ବନ୍ଦନା, ଭାବ ଓ ଅଶେଷ ପବିତ୍ରସ୍ମୃତି, ବିରୂପାକ୍ଷ ବାବୁଙ୍କ ଶକ୍ତିଶାଳୀ ଲେଖନୀ ପ୍ରସାଦରୁ ଗୋଟିଏ ମୂର୍ତ୍ତିମତୀ କାବ୍ୟରୂପରେ ଉତ୍କଳ-ସାହିତ୍ୟ-ଗଗନରେ ଉଜ୍ଜ୍ୱଳ ଭାବରେ ଉଦିତ ହେବାର ଦେଖି ପ୍ରାଣ ପୁଲକିତ ହେଉଅଛି ଓ ଯାଜପୁରବାସୀଙ୍କ ପକ୍ଷରୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି ।

ବର୍ତ୍ତମାନପରି ରାଜନୈତିକ ଯୁଗରେ ବିରୂପାକ୍ଷ ବାବୁ ଯେ ଏପରି ସୁକୁମାରକଳାକୁ ହୃଦୟରେ ପୋଷଣ କରି ରଖି ଏପରି ଲେଖି ପାରିଛନ୍ତି ଏହା କମ୍ ଗୌରବର ବିଷୟ ନୁହେଁ ।

ଧନ, ମନ, ପ୍ରାଣ ଢ଼ାଳିଦେଇ ରାଜନୈତିକ ଆନ୍ଦୋଳନରେ ଯୋଗ ଦେବା ହେତୁ ସତ୍ୟବାଦୀ ଛୁରିଅନା କୁଞ୍ଜରୁ କେତେ କାବ୍ୟଧାରା ବାହାରି ଯେ ଅକାଳରେ ଶୁଖିଗଲା ତାହା ଭାବିଲେ ପ୍ରାଣ କାନ୍ଦିଉଠେ । ଆହା ! ସେହି ମହୀୟସୀ ଅମୃତଧାରା ସବୁ ଯଦି ଏପରି ଶୁଖି ନଥାନ୍ତା ତାହାହେଲେ ଉତ୍କଳ ସାହିତ୍ୟକ୍ଷେତ୍ର ଆଜି କେଡ଼େ ସୁଜଳା, ସୁଫଳା ଶସ୍ୟଶାମଳା ହୋଇ ନଥାନ୍ତା । ସେ କଥା ଭାବିଲେ ଆଉ କ'ଣ ହେବ ? ଯେଉଁ ବୀଣା ତାର ଓ ଝଙ୍କାର ସବୁ ଅକାଳରେ ଛିଣ୍ଡିଗଲା, ଆଉ କ'ଣ ତାର ମୂର୍ଚ୍ଛନା ଉତ୍କଳରେ କେବେ ବାଜିବ ? ସ୍ୱର୍ଗର ନନ୍ଦନକାନନର ଅମର ପାରିଜାତପରି ଯେଉଁ କଳିକାଗୁଡ଼ିକ ଅକାଳରେ ଝଡ଼ିପଡ଼ିଲା ସତେ କଣ ଆଉ ତାହା ଫୁଟିବ ?

ମାତୃଭୂମିର ଏପରି ଗୋଟିଏ ନିସର୍ଗ-ସୁନ୍ଦର ଦୃଶ୍ୟକୁ ଅବଲମ୍ବନ କରି ତହିଁ ଉପରେ କାବ୍ୟ-ଜଗତରେ ଏପରି ମନୋହାରିଣୀ ଶିଳ୍ପସୌଧ ରଚନା କରିବାର ଆଦିଗୁରୁ, ଉତ୍କଳରେ ଅମର କବିବର ରାଧାନାଥ ଅଟନ୍ତି । ''ଚିଲିକା'' ତାର ତନୟା, ଯାହା କି ଜଗତରେ ଅତୁଳନୀୟା ଅଟେ । ନିସର୍ଗ ମାଧୁରୀ, ଚାରୁଦୃଶ୍ୟରାଜିପରିପୂରିତା ମାତୃଭୂମିର ନାନା ନଦୀ ପର୍ବତକୁ ଲକ୍ଷ୍ୟ କରି କେତେ କବି କେତେ କେତେ ଲେଖିଅଛନ୍ତି; କିନ୍ତୁ ବନ୍ଦନୀୟ କବି ନୀଳକଣ୍ଠଙ୍କ ''କୋଣାର୍କେ'' ଏ ଦିଗରେ କୋଣାର୍କ ମନ୍ଦିରପରି ଉଲ୍ଲେଖଯୋଗ୍ୟ । ମୋର ଧାରଣା ଯେ ''ବୈତରଣୀ'' ଏ ଜାତୀୟ କାବ୍ୟ ଅଟେ ।

''ଚିଲିକା''ରେ ଯେଉଁ ଭାବ ସବୁ ତଳ ତଳ ଅବସ୍ଥାରେ ବାସନ୍ତୀ ଜ୍ୟୋତ୍ସ୍ନାବିଧୌତ ରଜନୀର ପୁଷ୍ପସୌରଭବାହି-ମୃଦୁ ମନ୍ଦହିଲ୍ଲୋଳରୂପରେ ଖେଳୁଥିଲା, ''କୋଣାର୍କେ''ରେ ତାହା ମୂର୍ତ୍ତିମନ୍ତ ଓ କର୍ମ୍ମମୟ ଦିବ୍ୟ ଶରୀର ଧାରଣ କରି ଅଙ୍ଗୁଳି ନିର୍ଦ୍ଦେଶରେ ନବୀନଉତ୍କଳକୁ ନବୀନଭାବରେ ନବୀନମାତୃ ମନ୍ତ୍ରରେ ଅନୁପ୍ରାଣିତ ଓ ଦୀକ୍ଷିତ କରି ନବପ୍ରେରଣା ଦାନ କରି ପ୍ରବୃଦ୍ଧ କଲା । ବାସ୍ତବିକ ପ୍ରାକୃତିକ କଳିଙ୍ଗପ୍ରଦେଶରେ ଚିଲିକା ଓ କୋଣାର୍କ ଯେପରି ଜଗତରେ ଅତୁଳ୍ୟା, କାବ୍ୟ-ଜଗତରେ ''ଚିଲିକା'' ଓ ''କୋଣାର୍କେ'' ମଧ୍ୟ ତଦ୍ରୂପ । 'ଚିଲିକା'ର ଭାବସବୁ ଆକାଶର ଉର୍ଦ୍ଧ୍ୱସ୍ତରସ୍ଥ ନବୀନନୀଳମେଘରାଶିତୁଲ୍ୟ, ଏବଂ ''କୋଣାର୍କେ'' ଓ ''ବୈତରଣୀର'' ଭାବସମୂହ ପୃଥିବୀ ନିକଟସ୍ଥ ପ୍ରାଣପରିପୋଷକ ଅମୃତବାରିଧାରା ସଦୃଶ ଅଟେ । ସାହିତ୍ୟ ଜଗତରେ ଏହା ବିକାଶର କ୍ରମ, ଏବଂ ସମୟ ଓ ଯୁଗଧର୍ମ୍ମୋପଯୋଗୀ ବୋଲି ବୋଲିବା ବାହୁଲ୍ୟ ମାତ୍ର ।

ଆମ୍ଭମାନଙ୍କର ଶ୍ରଦ୍ଧେୟ କବି ବିରୂପାକ୍ଷ ଉତ୍କଳର ନାନା ଧର୍ମ୍ମ- ସମନ୍ୱୟର ଲୀଳାଭୂମି, ଅଶେଷ ତୀର୍ଥ ଓ କୀର୍ତ୍ତିରାଜି ଅଳଂକୃତା, ବ୍ରାହ୍ମଣ୍ୟଧର୍ମର ଦୁର୍ଗସ୍ୱରୂପା, ସ୍ୱାଧୀନ ରାଜାମାନଙ୍କ ଅଧ୍ୟୁଷିତା, ଉତ୍କଳର ଦ୍ୱିତୀୟ ପୁରୀଧାମସ୍ୱରୂପା, ବରାହ-ବିରଜା ପାଳିତା ବର୍ତ୍ତମାନ ନିଦ୍ରିତା,

ଅବହେଳିତା ଯାଜିପୁର ନଗରୀର ବର୍ଣ୍ଣନା ଏହି ଗୋନାସାପ୍ରଭବା ବୈତରଣୀ ନଦୀକୁ ଅବଲମ୍ବନକରି କରିଅଛନ୍ତି ଓ ତହିଁ କୂଳସ୍ଥ ଗୋହିରାଟିକିରିରେ ଶେଷ ସ୍ୱାଧୀନ ନରପତିଙ୍କ ପତନକୁ ଲକ୍ଷ୍ୟକରି ପୂର୍ବ ସ୍ମୃତି ଜାଗ୍ରତ କରାଇ ଅଛନ୍ତି; ଅତି ପ୍ରାଚୀନା, ପୁଣ୍ୟଶୀଳା ଉତ୍କଳରେ ବିଷ୍ଣୁପଦୀ ରୂପରେ ପୂଜିତା ଏହି ବୈତରଣୀ ନଦୀର ଉଭୟ ତଟରେ ସଂଘଟିତ ହୋଇଥିବା ପୌରାଣିକ ଓ ଐତିହାସିକ ଯୁଗର ଘଟଣାବଳିକୁ କାବ୍ୟ ଛଟାରେ ଓ ନାନା ରସରେ ଭାବିତ ଓ ରସାଣିତ କରି ପାଠକମାନଙ୍କ ନିକଟରେ ଉପସ୍ଥାପିତ କରିଅଛନ୍ତି । କବି ମହୋଦୟ ଏଥିରେ କେତେ ପରିମାଣରେ ସଫଳ ହୋଇ ଅଛନ୍ତି ତାହା ସୁଧୀପାଠକମାନଙ୍କ ବିଚାର ଉପରେ ନିର୍ଭର କରେ । ଏହି ଶକ୍ତିପୀଠର ଶାକ୍ତଧର୍ମର ଅଧିଷ୍ଠାତ୍ରୀ ଦେବୀରୂପେ ବହୁକାଳରୁ ପୂଜିତା ବିରଜାଦେବୀଙ୍କୁ କବି ବେଦମାତା ସାବିତ୍ରୀ ବୋଲି ପ୍ରତିପନ୍ନ କରିଅଛନ୍ତି । ଏହା ବିଶେଷ ପ୍ରଣିଧାନ ଓ ପରୀକ୍ଷାର ବିଷୟ ଅଟେ ।

ଆଜିକାଲି ଅତ୍ୟନ୍ତ ସରଳ ଓ ଗ୍ରାମ୍ୟ ଭାଷାରେ ହାଲୁକା ସାହିତ୍ୟସବୁ ବେଶୀ ଆଦୃତ ହେଉଅଛି । ଏପରି ସମୟରେ ଲେଖକଙ୍କର କିଞ୍ଚିତ ଗୁରୁଗମ୍ଭୀର-ଭାବାନୁଗାମୀ ଭାଷା କିପରି ଅଭିନନ୍ଦନ ଓ ଆଦର ପାଇବ ଦେଖିବାକୁ ଆଗ୍ରହ ଜନ୍ମିବା ସ୍ୱାଭାବିକ । କବି ଠାଏ ଠାଏ ପୁରୁଣା ସାହିତ୍ୟରେ ବ୍ୟବହୃତ ହୋଇଥିବା ଗୋଟିଏ ଗୋଟିଏ ଶବ୍ଦ ବଡ଼ ଦକ୍ଷତାର ସହିତ ଖଞ୍ଜିଛନ୍ତି । କବି ମହୋଦୟ ଏହି ପ୍ରଥମ ଉଦ୍ୟମରେ ଯେପରି ହାତଯଶ ଦେଖାଇଅଛନ୍ତି ଏବଂ ଆବେଗମୟୀ ଓ ଓଜସ୍ୱିନୀ ଭାଷାରେ ଯେପରି ବର୍ଣ୍ଣନା କରିବାର କ୍ଷମତା ଓ ଚାତୁରୀ ଦେଖାଇଅଛନ୍ତି ତାହା ବାସ୍ତବିକ ମନୋମୁଗ୍ଧକର । ବାହୁଲ୍ୟ ଭୟରେ ଉଦ୍ଧାର କରି ପାରିଲୁନାହିଁ ।

ଜାଗ୍ରତଜାତି ଉତ୍‌ଥାନ ସମୟରେ ସେ ତାର ଅତୀତ ବୀରତ୍ୱ ଓ ଗୌରବବାହୀ ଗାଥା ଶୁଣିବାକୁ ବଡ଼ ଭଲପାଏ ଓ ତାହା ମୃତ୍ୟୁସଞ୍ଜୀବନୀ ସୁଧାସ୍ୱରୂପ କାର୍ଯ୍ୟ କରେ । ବୈତରଣୀର କବି ଇଦୃଶଗାଥା ଓ ଐତିହାସିକ କାହାଣୀ ଅତି ପ୍ରାଚୀନାନଗରୀ ଯାଜିପୁର ସମ୍ବନ୍ଧେ ଶୁଣାଇବାକୁ ଯଥେଷ୍ଟ ଚେଷ୍ଟା କରିଅଛନ୍ତି । ଶଂସିତକାବ୍ୟରେ କୌଣସି ଲୌକିକ ବା ବ୍ୟବସାୟଗତ ଆଲୋଚନା, ନିନ୍ଦା ବା ପ୍ରଶଂସା ନ କରି କବି ବଡ଼ ସୁବୁଦ୍ଧିର କାର୍ଯ୍ୟ କରିଅଛନ୍ତି ।

''ବୈତରଣୀ''ର କବିଙ୍କଠାରୁ ଆମ୍ଭେମାନେ ଭବିଷ୍ୟତକୁ ଅନେକ ଆଶାକରୁଁ । ଅନୁରୋଧ ଯେ ସେ ଆମ୍ଭମାନଙ୍କୁ କଦାଚ ଏଥିରୁ ନିରାଶ କରିବେ ନାହିଁ ।

ଶ୍ରୀ ଗୋପାଳ ପ୍ରସାଦ ସିଂହ
ରାମବାଗ, ଯାଜପୁର
୨୪-୪-୩୨

# ଗୌର ଚନ୍ଦ୍ରିକା

ସାରସ୍ୱତ-ସଂସ୍କୃତିର ଜନନ-ଉତ୍ସ ପ୍ରକୃତି ଜଗତର ବୈଚିତ୍ର୍ୟମୟ, ଲୀଳାୟିତ ପରିପ୍ରକାଶରେ ସନ୍ନିହିତ । କାବ୍ୟିକ ଉତ୍‌ପ୍ରେରଣା ପ୍ରକୃତି ଆହୃତ । ଅନନ୍ୟ ସାଧାରଣ ବହୁ କାବ୍ୟକୃତିରେ ପ୍ରକୃତିର ପ୍ରତିଫଳନ ଅନବଦ୍ୟ । ଏହା ଏକାଧାରରେ ସ୍ୱଭାବ ମୂର୍ତ୍ତ ଓ କଳ୍ପନା ରଂଜିତ । ଦୃଷ୍ଟି ଓ ଦର୍ଶନର କେତେକ ପ୍ରଭେଦ ସତ୍ତ୍ୱେ ଭାବଚେତନାର ଐକିକତାକୁ ଘେନି ପ୍ରକୃତି ସମାଶ୍ରୟୀ କାବ୍ୟ ସମ୍ଭାର କାଳକାଳ ଧରି ରସିକ ପାଠକଙ୍କର ଚିତ୍ତରଂଜନରେ ବିଶେଷ ଭୂମିକା ବରଣ କରିଆସିଛି । 'ମେଘଦୂତ' ଭାରତୀୟ କାବ୍ୟ ପରଂପରାର ଅନ୍ୟତମ ବିଶିଷ୍ଟ ସାଧନ ରୂପେ ଆଦୃତ ହେବା କାଳରୁ ଭାରତ-ଭାରତୀ କେତେ ଯେ ଅନୁରୂପ ଆଭୂଷଣରେ ମଣ୍ଡିତା ହୋଇଛନ୍ତି, ତାର କଳନା ସହଜସାଧ୍ୟ ନୁହେଁ । ମାତ୍ର ଉତ୍କଳ- ଭାରତୀଙ୍କର ସାରସ୍ୱତ ଉପବନରେ 'ଚିଲିକା'ର ପ୍ରସ୍ଫୁଟନ ଯେଉଁ ସୌରଭ ବିତରଣ କରିଥିଲା, ସେଥିରେ ସମ୍ମୋହିତ ଅପରାପର କବିବୃନ୍ଦ ତଦନୁରୂପ ପ୍ରସୂନ ସୃଜନରେ ଏକଦା ଅଭିନିବିଷ୍ଟ ହେବାକୁ ଶ୍ରେୟ ଜ୍ଞାନ କରିଥିବାରୁ 'ବୈତରଣୀ'ର ଆବିର୍ଭାବ ଯେ ସେହି ପରଂପରାର ପୁଷ୍ଟିସାଧନ କରିଛି, ଏହା ସ୍ୱତଃ ପ୍ରତିପାଦିତ ।

'ବୈତରଣୀ'ର ଆତ୍ମପ୍ରକାଶ (୧୯୩୨) ପୂର୍ବରୁ 'ହିମାଚଳ' (ଗୋବିନ୍ଦ ଚନ୍ଦ୍ର ମହାପାତ୍ର), 'ଖଣ୍ଡଗିରି' (ଚନ୍ଦ୍ରମୋହନ ମହାରଣା), 'କପିଳାସ କ୍ଷେତ୍ର' (ଦାମୋଦର ପଟ୍ଟନାୟକ), 'ଉତ୍କଳ ଲକ୍ଷ୍ମୀ' (ଗଙ୍ଗାଧର ମେହେର), 'ସାଳନ୍ଦୀ' (ଚିନ୍ତାମଣି ମହାନ୍ତି) ଓ 'ଋଷିକୁଲ୍ୟା' (ତାରିଣୀ ଚରଣ ରଥ) ଆଦି 'ଚିଲିକା' (ରାଧାନାଥ ରାୟ)ର ଉତ୍ତର ଦାୟାଦ ଭାବେ ଉତ୍କଳୀୟ କାବ୍ୟ ଜଗତକୁ ସୁସମୃଦ୍ଧ କରିବା ସଙ୍ଗେ ସଙ୍ଗେ ରାଧାନାଥୀୟ କାବ୍ୟଧାରାକୁ ମାନ୍ୟତା ତଥା ପରିପୁଷ୍ଟି ପ୍ରଦାନ କରିଥିବା ଲକ୍ଷ୍ୟ କରାଯାଏ । ସ୍ଥାନ ବିଶେଷର ମାହାତ୍ମ୍ୟ, ଗୌରବ ଓ ପ୍ରତିଷ୍ଠାକୁ ଅନୁଭବରେ ଆଣି ଉପରୋକ୍ତ କବିଗଣ ସେମାନଙ୍କର କାବ୍ୟାଭିବ୍ୟକ୍ତିକୁ ରସାଣିତ କରିବାରେ ଯେଉଁଳି କୃତିତ୍ୱ ଦର୍ଶାଇଛନ୍ତି 'ବୈତରଣୀ'ର କବି ସେଥିରେ କୌଣସି ତ୍ରୁଟି କରିନାହାନ୍ତି ବରଂ ନିଜସ୍ୱ ରଚନା ପାଟବର ଦୃଷ୍ଟାନ୍ତ ଗଢ଼ି ତୋଳିବାରେ ଯଥେଷ୍ଟ ଶ୍ରମ ଓ ସାଧାନାର ବିନିଯୋଗ ଘଟାଇଛନ୍ତି ।

ସେଦିନ (୧୯୩୧) ପିତୃପକ୍ଷରେ ବିରୂପାକ୍ଷ ବୈତରଣୀ ତୀର୍ଥରେ ତର୍ପଣ କଲାବେଳେ ତୀର୍ଥର ଗୌରବ ଓ ଗୁରୁତ୍ୱ ସଂକ୍ରାନ୍ତୀୟ କବିତାଟିଏ ରଚନା କରିବାକୁ ମନସ୍ଥ କରି 'ବୈତରଣୀ'ର ଶୁଭାରମ୍ଭ କରିନ୍ତି । କବିଙ୍କ ମାନସପଟରେ ଦୃଶ୍ୟପରେ ଦୃଶ୍ୟର ଉଦ୍‌ଭାସନରୁ ଅନବଦ୍ୟ କାବ୍ୟଟିଏ ଜନ୍ମଲାଭ କରେ । ଅନ୍ୟାନ୍ୟ ନଦୀ ବା ତୀର୍ଥଭଳି ବୈତରଣୀ କେବଳ ଏକ ଜଳଭାଗ

ମାତ୍ର ନହୋଇ ଆଧ୍ୟାତ୍ମିକ ଏବଂ ପାରମାର୍ଥିକ ଗୌରବରେ ପ୍ରତିଷ୍ଠା ଲାଭ କରିଥିବାରୁ ଆଦ୍ୟଭାଷରେ ତତ୍ ସଂପର୍କିତ ସୂଚନା ପ୍ରଦାନ ପୂର୍ବକ ଏହାକୁ ଉତ୍କଳର ସରସ୍ୱତୀ ବୋଲି କବି ଅଭିହିତ କରିଛନ୍ତି । ଏହାରି କୂଳରେ ଏକଦା ଅନୁଷ୍ଠିତ ଅପାର ଯଜ୍ଞାନୁଷ୍ଠାନରୁ ଯାଜିପୁର ନାମର ସାର୍ଥକତା, ତୀରବର୍ତ୍ତୀ ଶ୍ମଶାନର ପାବନତା ଉଭୟ ତଥ୍ୟ ଓ ବିଶ୍ୱାସ ଦୃଷ୍ଟିରୁ ପ୍ରତିପାଦନ କରିବା ପରେ କବିଦୃଷ୍ଟି ପ୍ରସରି ଯାଇଛି ବୈତରଣୀ ମେଖଳାୟିତ ଯାଜିପୁରର ଐତିହ୍ୟମୟ ଅତୀତକୁ । ଇତିହାସ ନିର୍ଜିତ ବିରୂପାକ୍ଷଙ୍କର ସାରସ୍ୱତ ବ୍ୟକ୍ତିତ୍ୱ ସମକ୍ଷରେ ଯାଜିପୁର ଏହାର ପରିପୂର୍ଣ୍ଣ ଗୌରବରେ ଉଭା ହୋଇଥିବାରୁ ବୌଦ୍ଧ, ଜୈନ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମଧାରାର ଅନୁବର୍ତ୍ତନ ଓ ପରିପୋଷଣରେ ଯାଜପୁରର ଭୂମିକା ନିର୍ଣ୍ଣୟ କବି ଲେଖନୀରେ ଯେଉଁ ଦ୍ୟୁତି ଆନୟନ କରିଛି ତଦ୍ଦ୍ୱାରା 'ବୈତରଣୀ' ଯେ ସୁସମୃଦ୍ଧ ହୋଇ ଉଠିଛି, ଏହା ସୁପ୍ରେକ୍ଷ ।

ବର୍ଣ୍ଣନ ପ୍ରାଧାନ୍ୟ 'ବୈତରଣୀ'ର ପ୍ରମୁଖ ଶିଳ୍ପ-କର୍ମ । ସେଥିରେ ବୈତରଣୀ ସନ୍ନିହିତ ତୀର୍ଥ, ସରୋବର, ଦେବବିଗ୍ରହ, ମନ୍ଦିର, ପ୍ରାନ୍ତର ଓ କାନନକୁଞ୍ଜ ବର୍ଣ୍ଣୋଜ୍ଜ୍ୱଳ ବିଭାରେ ଉତ୍‌କୀର୍ଣ୍ଣ । କାଳ ଦନ୍ତଘାତରେ ବିଦୀର୍ଣ୍ଣ, ବିଶୀର୍ଣ୍ଣ ଓ ବିଗତମହିମ ଅତୀତ କୀର୍ତ୍ତିରାଜିକୁ ସୁଷମାନ୍ୱିତ କରିବାରେ କବିଦୃଷ୍ଟିର ବୈଶିଷ୍ଟ୍ୟ ଶଂସିତ କାବ୍ୟକଳେବରରେ ପ୍ରାୟ ସର୍ବତ୍ର ଅନୁଭବ୍ୟ । ଆଞ୍ଚଳିକ ଜନଶ୍ରୁତି, ଗବେଷଣାଲବ୍ଧ ଐତିହାସିକ ତଥ୍ୟ ଓ ପୌରାଣିକ ଅଭିଜ୍ଞାନର ଯଥାଯଥ ସମନ୍ୱୟ ସୂତ୍ରରେ କବିକଳ୍ପନାର ବ୍ୟାପ୍ତି ଓ ସ୍ଫୀତିକୁ ଘେନି 'ବୈତରଣୀ'ର କାବ୍ୟଶ୍ରୀ ସଂବର୍ଦ୍ଧିତ । ବରାହନାଥ, ଦଶାଶ୍ୱମେଧଘାଟ, ଶିବଦାସପୁର, ନରପଦା, ବିଶ୍ୱେଶ୍ୱର, କପିଳେଶପୁର, ଦାସୀଗଡ଼ିଆ, ହାତୀଗଡ଼ିଆ, ଚଂପାମରେଇ ଓ ଗୋହିରାଟିକର ଆଦି କେବଳ ଐତିହାସିକ ସ୍ମୃତି ସ୍ଥଳ ଭାବରେ ଆଲୋଡ଼ିତ ନହୋଇ ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ଆଲେଖ୍ୟଶାଳିକାରେ ରୂପାନ୍ତରିତ ହେବା ବିରୂପାକ୍ଷୀୟ କବିକୃତିର ନିରୁପମ ସିଦ୍ଧି ।

ଧର୍ମଧାରାର ବିବର୍ତ୍ତନରେ ଯାଜପୁର ବିଲ୍ୱକୁଞ୍ଜ ସମାକୀର୍ଣ୍ଣ ଶୈବକ୍ଷେତ୍ରରେ ପରିଣତ ହୋଇଥିବା ଗୋଚରୀଭୂତ ସତ୍ୟକୁ ପ୍ରତିଷ୍ଠା ଯୋଗାଇଛନ୍ତି କବି ଏକ ପୌରାଣିକ ଅଭିଜ୍ଞାନ ମାଧ୍ୟମରେ । କୋଟି ସଂଖ୍ୟକ ପଦ୍ମପୁଷ୍ପ ଅର୍ପଣରେ ଶିବାରାଧନାରତା ମହାଲକ୍ଷ୍ମୀଙ୍କ ଭକ୍ତିନିଷ୍ଠାର ପରୀକ୍ଷା ନେବାକୁ ଯାଇ ଶିବ ଗୋଟିଏ ପୁଷ୍ପ ଲୁଚାଇ ଦେବାରୁ ଲକ୍ଷ୍ମୀ ସ୍ୱବକ୍ଷୋଜକୁ ପଦ୍ମରୂପେ ନିବେଦନ କଲେ । ଆଶୁତୋଷ ଏଥିରେ ଅଭିଭୂତ ହୋଇ ବକ୍ଷୋଜଟିକୁ ବିଲ୍ୱଫଳ ରୂପେ ବିଲ୍ୱପାଦପରେ ଶୋଭା ପାଇବା ପାଇଁ ବରପ୍ରଦାନ କରିଥିବାରୁ ସେହିଦିନୁ ଲକ୍ଷ୍ମୀଙ୍କ ଆରାଧନା-କ୍ଷେତ୍ର ଯାଜପୁରସ୍ଥ ବିଲ୍ୱକୁଞ୍ଜରେ ସେ ସ୍ୱୟଂ ଆସ୍ଥାନ ପାତିଲେ । ପାର୍ବତୀଙ୍କୁ ତ୍ୟାଗକରି ଆସିଥିବାରୁ ଏଠାରେ ଶିବ କୁତ୍ରାପି ପାର୍ବତୀଙ୍କ ସହ ଏକତ୍ର ପୂଜିତ ହୁଅନ୍ତି ନାହିଁ - ଏହା 'ବୈତରଣୀ'ରେ ପ୍ରତିପାଦିତ । ବ୍ରହ୍ମାଙ୍କର ପତ୍ନୀ ସାବିତ୍ରୀ ଭାବରେ ବିରଜାଙ୍କର ପ୍ରତିଷ୍ଠା, ଯଜ୍ଞ ସମ୍ଭୂତ ବରାହରୁ

ଗୋଟିକଙ୍କର ଆଳି ଅଧିଷ୍ଠାନ, ଅର୍ଜ୍ଜୁନଙ୍କ ଦ୍ୱାରା ତ୍ରିଲୋଚନେଶ୍ୱରଙ୍କର ସ୍ଥାପନ, ପ୍ରେମପୂତ ଚୈତନ୍ୟଙ୍କର ବିଶ୍ୱେଶ୍ୱରଙ୍କ ସ୍ଥଳୀରେ ପ୍ରତିମୂର୍ତ୍ତି ରୂପେ ସ୍ଥାନ ଗ୍ରହଣ ଆଦି ବୈଶିଷ୍ଟ୍ୟ ନିର୍ଣ୍ଣାୟକ ବହୁବିଧ ଲୌକିକ - ଆଲୌକିକ ଘଟଣାବଳୀର ବର୍ଣ୍ଣନରେ 'ବୈତରଣୀ' ମୁଖରିତ ।

ଯଥାଯଥ ଭାବ ସଞ୍ଚାରୀ ପଦ ପ୍ରୟୋଗରେ ଉପମା, ରୂପକ ଓ ଉତ୍ପ୍ରେକ୍ଷାଦି ଅର୍ଥାଳଙ୍କାର ଖଚିତ କରି କବି 'ବୈତରଣୀ'ର ଅଙ୍ଗଶ୍ରୀକୁ ଶବଳିତ କରିଛନ୍ତି । ସ୍ଥାନେ ସ୍ଥାନେ ଚିତ୍ରକଳ୍ପର ବିନିଯୋଗ କବି ପ୍ରତିଭାର ଉଜ୍ଜ୍ୱଳ ଦୀପ୍ତି ପ୍ରକାଶ କରିଛି । ସିଦ୍ଧେଶ୍ୱର ମନ୍ଦିର ଚତ୍ୱରରୁ ସୂର୍ଯ୍ୟୋଦୟକୁ ଲକ୍ଷ୍ୟ କରି କବି କହନ୍ତି -

''ଚନ୍ଦ୍ରଚୂଡ଼ ଚୂଡ଼େ ଜଡ଼ିବା ଇଚ୍ଛି ରଣେ ସଙ୍ଗତ
ହେଲେ ପ୍ରାତେ ଚନ୍ଦ୍ର ସୂର୍ଯ୍ୟ କି ତେଣୁ ବହେ ରକତ ।
ପ୍ରାଚୀତଟେ ସୂର୍ଯ୍ୟ ସମୀପେ କେତେ ଲୋହିତ ରେଖା
ଫୁଟିକି ଚନ୍ଦ୍ରଙ୍କ ମାର୍ଗଣ ନଭେ ଯାଉଛି ଦେଖା ।''

ଆଖଣ୍ଡଳମଣିଙ୍କ ଆସ୍ଥାନପୀଠକୁ ନିସର୍ଗ ସୁନ୍ଦର ରୂପଶ୍ରୀ ଦାନ କରିଛନ୍ତି କବି ନିମ୍ନପ୍ରକାରେ -

''ପୃଥିବୀ ପ୍ରବାଳ ପେଡ଼ି କି ନୀଳନଭ ଚାଙ୍ଗଡ଼ା
ଚନ୍ଦ୍ରମା ମୁକୁର ବସାଣ ବିଶ୍ୱକର୍ମା ସ୍ୱଜଡ଼ା
ତହିଁ ହେମ ଗୌର ଆସନେ ମଣି ମନ୍ଦିର-ମଣି
ବୀଚି ବାହୁପାଶେ ବେଢ଼ାଇ ଯତ୍ନେ ରଖିଛୁ ଧନୀ ।''

ସୌନ୍ଦର୍ଯ୍ୟ ସଂପାଦନରେ ରୀତିଧର୍ମିତାକୁ ଆତ୍ମସାତ୍ କରିଥିଲେ ହେଁ ଦୃଷ୍ଟିଭଙ୍ଗୀରେ କବି ଯେ ଆଧୁନିକତାର ଅନୁଗାମୀ ଏହା ତାଙ୍କର ସମାଜ ଚେତନା ମାଧ୍ୟମରେ ଲକ୍ଷ୍ୟଣୀୟତାର ସହ ପ୍ରତିଫଳିତ । ଜାତି ବିଭାଗ, ବାଲ୍ୟବିବାହ, ବୈଧବ୍ୟ ପାଳନଗତ କଠୋରତା କବିପ୍ରାଣକୁ ବ୍ୟଥିତ କରିଛି । ବୈତରଣୀ ତୀର୍ଥ-ପଣ୍ଡାଙ୍କ ଆଚାର-ଆଚରଣରେ କବି ମର୍ମାହତ । ପୁଣ୍ୟପ୍ରାଣ ଯାତ୍ରୀମାନଙ୍କୁ ନେଇ ଏକଦା ଆଚାର ନିଷ୍ଠ ବେଦଜ୍ଞ ବ୍ରାହ୍ମଣମାନଙ୍କର ଅଧୁନା ଅର୍ଥଲୋଭଜନିତ ଅଧୋଗତି, ବାରିଣୀ ଯାତ୍ରାକାଳରେ ବୈତରଣୀର ବାଲୁକା ବକ୍ଷକୁ ଆପଣାର ଦାବୀ କରି ବଣିକମାନଙ୍କଠାରୁ ପଣି ଆଦାୟ ରୀତିକୁ ବ୍ୟଙ୍ଗ କରି କବି କହିଛନ୍ତି-

''ଅରଜି ଅଧମେ ଲକ୍ଷେ ମା ! ପକ୍ଷେ ନପାନ୍ତି ଅନ୍ନ
ପାପ ବିନାଶନେ ବିହୁକି ଅନ୍ନବିନେ ମରଣ !

ଏହା ସତ୍ତ୍ୱେ କବି ଲେଖନୀରେ ଯାଜପୁର 'ଅନ୍ୟ ବାରାଣସୀ' ଓ 'ଉତ୍ତକାଶୀ' । ସୂକ୍ତି ନିର୍ମାଣ କରି କବି ପୁନଶ୍ଚ କହନ୍ତି -

''ଯେ ଦେଶ ସଲିଳେ ପବନେ ହୁଏ ଦେହ ପାଳିତ
ନିଜ ଦେଶ ବୋଲି ତାହାକୁ ବରିବାଟି ବିହିତ ।
ଯାର ଅନ୍ନଜଳ ଆଶ୍ରୟ ତାକୁ ପର ଯେ ମଣେ
ଆସନ ତାହାର ସତତ ମାତୃଦ୍ରୋହୀ ଗହଣେ ।''

ସେଥିପାଇଁ ବୈତରଣୀକୁ ଚାରୁ ସୁଷମା ମଣ୍ଡିତ ଦେଖିଛନ୍ତି କବି ସର୍ବତ୍ର । କବିଚାହାଁଣୀରେ ଚମତ୍କାରିତା ମଧ ଏଥିରେ ହୋଇଛି ଅଭିବ୍ୟଂଜିତ । ବୈତରଣୀକୁ ସେ ଲକ୍ଷିଛନ୍ତି -

''ଯାଜିପୁର କୀର୍ତ୍ତିସୁନ୍ଦରୀବରା ନଗରୀ ହୀରା
କଣ୍ଠମାଳା ତୁହି ଜନନୀ ଚାରୁଧାରା ସୁଚିରା
ପଦକ ତହିଁକି ବରାହ-ଧାମ ଅଙ୍ଗ ଧବଳ
ମଧ୍ୟେ ଯାର ନୀଳସୁନ୍ଦର ଦେବମୂର୍ତ୍ତି ବିମଳ ।''

ଦଶାଶ୍ୱମେଧ ଘାଟଠାରୁ ବୈତରଣୀଧାର ଅଧୁନା ଦୂରକୁ ହଟି ଯାଇଥିଲେ ହେଁ ଲୋକେ ପୁଣ୍ୟଲାଭ ଉଦ୍ଦେଶ୍ୟରେ ପୁରାତନ ଗର୍ଭରେ ଥିବା ସାମାନ୍ୟ ଜଳରେ ସ୍ନାନ କରୁଥିବା ବିଷୟକୁ କବି ଚମତ୍କାର ଏକ ମୌଳିକ ଉପମାନୁଷଙ୍ଗ ଯୋଗାଇ ନିମ୍ନମତେ ବାଢ଼ିଛନ୍ତି -

''ଯଜ୍ଞସ୍ଥାନୁ ଏବେ ଅନ୍ତର ତୋର ସୁଧାର ଧାର
ଆଦିମ ଆବାସ ତୋର ମା ! ଆଜି ବାଲୁକାସାର ।
ଘୋଡ଼ାଇଲେ ମୁଖ ଜନନୀ ନିଜ ବସ୍ତ୍ର ଅଞ୍ଚଳେ
ଅଭ୍ରମେ ଟାଣଇ ସନ୍ତାନ ବାସ ସିନା ଚଞ୍ଚଳେ ।
ଭୁଲେ ନାହିଁ ଆନ ବଦନେ ପୁତ୍ର ବାତ୍ସଲ୍ୟ ବଶେ
ଲୋଡ଼େ ଗୁପ୍ତମୁଖ ଚୁମ୍ବନ ତେଣୁ ସେହି ହରଷେ ।''

ପ୍ରାକ୍ ସ୍ୱାଧୀନତାକାଳୀନ ଅଧିକାଂଶ କାବ୍ୟ କବିତାର ପ୍ରାଣ ସତ୍ତାରେ ସ୍ୱଦେଶ ପ୍ରୀତିର ଉଚ୍ଛଳ ଭାବ ସ୍ରୋତର ଯେଉଁ ପ୍ରବାହ ଲକ୍ଷ୍ୟ କରାଯାଏ, 'ବୈତରଣୀ' ସେଥିରେ ସର୍ବତୋଭାବେ

ଉତ୍ପ୍ଳାବିତ । ଗୋହିରାଟିକର ଯୁଦ୍ଧରେ ମୁକୁନ୍ଦ ଦେବଙ୍କ ପରାଜୟ ଓ ନିଧନ ପରବର୍ତ୍ତୀ ଓଡ଼ିଶାର ଦୁର୍ଦ୍ଦଶା ମୁସଲମାନ, ମରାଠା ଓ ଇଂରେଜମାନଙ୍କ ଅଧୀନରେ ଛିନ୍ନାଙ୍ଗ ଉତ୍କଳର ଦୁରବସ୍ଥାର ଇତିହାସକ୍ରମିକ ଚିତ୍ର ଉପସ୍ଥାପନରେ ବିରୂପାକ୍ଷଙ୍କର ବ୍ୟଥିତ ହୃଦୟର ପରିଚୟ ଯେପରି ସନ୍ନିହିତ ଯଯାତି କେଶରୀଙ୍କ ବେଦ- ଧର୍ମସ୍ଥାପନ ଜନିତ କୀର୍ତ୍ତି, ପ୍ରତାପରୁଦ୍ରଙ୍କର ଉଦାର ଚୈତନ୍ୟ ଭକ୍ତି, ଉତ୍କଳର ରଣରଙ୍ଗା ପାଇକ ବାହିନୀର ସମର ଜୈତ୍ରୀକୁ ଘେନି ଗୌରବ ବୋଧ ମଧ୍ୟ ସେହିପରି ଅଭିବ୍ୟକ୍ତ ।

ରାଷ୍ଟ୍ର ତଥା ସମାଜ - ଜୀବନରେ ଦୃଶ୍ୟମାନ ବିପର୍ଯ୍ୟୟର ହେତୁ ନିର୍ଣ୍ଣୟ କରିବାକୁ ଯାଇ କବି ଯେଉଁ ସବୁ ଦୋଷ ଦୁର୍ବଳତା ସନାକ୍ତ କରିଛନ୍ତି ସେଗୁଡ଼ିକ ଏବେ ପକ୍ଷ ବିସ୍ତାର କରୁଥିବାରୁ ତାଙ୍କର ଦୂରଦୃଷ୍ଟିକୁ ପ୍ରଶଂସା କରିବାକୁ ହୁଏ । ଆଜିର ଶିକ୍ଷା ଜ୍ଞାନାର୍ଜନ ଲାଗି ନୁହେଁ, ନୀଚ ସ୍ୱାର୍ଥ ସାଧନ ଲାଗି ଅଭିପ୍ରେତ, ଧର୍ମପ୍ରାଣ ହିନ୍ଦୁ ସନ୍ତାନର ଧର୍ମାଚରଣକୁ ହେୟ ଜ୍ଞାନ କରି ଅର୍ଥାହରଣକୁ ଶ୍ରେୟରୂପେ ବରଣ, ରାଜଭାଷା (ଇଂରାଜୀ)କୁ ମାତୃଭାଷାଠାରୁ ଶ୍ରେଷ୍ଠ ଆସନ ପ୍ରଦାନ ଆଦି ଆତ୍ମକ୍ଷୟକାରୀ ଦୁର୍ଗୁଣ ସଂପ୍ରତି ସର୍ବମୟ ହୋଇ ଉଠିଥିବାରୁ କବି ବିରୁପାକ୍ଷଙ୍କର ଚେତାବନୀ ଏକାନ୍ତ ସ୍ମରଣୀୟ ।

ବିରୂପାକ୍ଷ ସ୍ୱଦେଶ ଓ ସ୍ୱଜାତିର ପୁନରଭ୍ୟୁତ୍ଥାନର ପାବନ ସ୍ୱପ୍ନରେ ଏକଦା ଯେଭଳି ବିଭୋର ହୋଇ ଉଠିଥିଲେ 'ବୈତରଣୀ' ତା'ର ସାକ୍ଷ ବହନ କରେ । ଗଭୀର ଆଶାବାଦର ଉଦାତ୍ତ ଝଙ୍କାର ଶେଷ ପଦପଂକ୍ତିରେ ଧ୍ୱନିତ କରି ସେ ଗାଇଛନ୍ତି -

''ଛିନ୍ନମସ୍ତା ପୁଣି ଉଠିବେ ଟେକି ଶିର ଗରବେ
ନ ସହିବା ଜନ କମ୍ପିବେ ଡରେ ଭୀଷଣ ରବେ ।
ଲକ୍ଷ୍ମୀ ସ୍ୱରସ୍ୱତୀ ଖଟିବେ ପୂର୍ବଖଟଣି ସ୍ମରି
ଗାଇବୁ ମା-ଲୋ କଲୋଳ ତାଳେ ସ୍ତୁତି ତାଙ୍କରି ।

* * *

ବହିଯାଉ ତୋର ରାଇଜେ ସ୍ୱର୍ଗ ଅମୃତ-ଧାର
ପାଇ ଚରାଚର ହୁଅନ୍ତୁ ବିଶ୍ୱ ସୁଷମାଗାର ।''

ବିଷୟ ବିନ୍ୟାସରେ ମୌଳିକତା, ଚିତ୍ରକଳ୍ପ ସୃଜନରେ ସ୍ୱତନ୍ତ୍ରତା, ଦୃଷ୍ଟି ଓ ଦର୍ଶନରେ ଚମତ୍କାରିତାର ସଫଳ ପ୍ରୟୋଗ 'ବୈତରଣୀ'କୁ ବର୍ଣ୍ଣନାତ୍ମକ କାବ୍ୟ ଶ୍ରେଣୀର ସମ୍ମାନିତ ସ୍ତରରେ ଅଧିଷ୍ଠିତ କରିଥିବାରୁ ଯାଜନଗ୍ର-ସରସ୍ୱତୀଙ୍କର କିରୀଟ ଭୂଷାର ମଣି ରୂପେ ଏହା ବରଣୀୟ । କବିଙ୍କୁ ଅନୁସରଣ କରି କହିବାକୁ ଇଚ୍ଛା ହୁଏ -

ଯାଜପୁର ମହୀମଣ୍ଡଳେ ରାଜୁଥିବ ଯାବତ
'ବୈତରଣୀ' କାବ୍ୟ ଗୌରବେ ହେଉଥିବ ଆଦୃତ ।

୧୯୯୩ରେ ବିରୂପାକ୍ଷ ଶତବାର୍ଷିକୀ ପାଳନ ଅବକାଶରେ ବିରୂପାକ୍ଷ ସ୍ମରଣିକା ଓ ଡକ୍ଟର ବାଉରୀବନ୍ଧୁ କରଙ୍କ ଅକ୍ଳାନ୍ତ ଉଦ୍ୟମ ପ୍ରସୂତ ବିରୂପାକ୍ଷ ପ୍ରବନ୍ଧାବଳୀ ପ୍ରକାଶିତ ହୋଇ ପାଠକମାନଙ୍କୁ ବିରୂପାକ୍ଷ ପ୍ରତିଭା ସଂପର୍କରେ ଅବହିତ କରାଇ ଆସିଥିଲେ ହେଁ ବିରୂପାକ୍ଷ କାବ୍ୟକୃତିର ଅନୁପଲବ୍ଧି ଯୋଗୁଁ ଏହା ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ନଥିଲା । ସେ ଯାବତ୍ ଏହାର ଅଭାବ ଅନୁଭବ କରି ବିରୂପାକ୍ଷ ସ୍ମୃତି-ପରିଷଦର ସଭାପତି ଡକ୍ଟର ଖଗେଶ୍ୱର ମହାପାତ୍ର ମୋତେ ଏ ଦିଗରେ ଉଦ୍ୟମ କରିବାକୁ ଉତ୍ସାହିତ ଓ ପ୍ରଣୋଦିତ କରି ଆସୁଥିଲେ । ନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ଦ୍ଦିଷ୍ଟ ସମୟରେ ସଂପାଦିତ ହେବାକୁ ନିୟତିର ବିଧାନ ଭାବେ ଗ୍ରହଣ କଲେ ସେହି ଶୁଭକ୍ଷଣ ଏବେ ସମାଗତ, କହିବାକୁ ହେବ ।

ବିରୂପାକ୍ଷଙ୍କର କାବ୍ୟତ୍ରିତୟ 'ବୈତରଣୀ', 'ମଥୁରା ବିଜୟ' ଓ 'ଷଟ୍‌ଶକ୍ତି' ମଧ୍ୟରୁ କେବଳ 'ବୈତରଣୀ'ଟି କୁ ସଂପାଦିତ କରି ଏବେ ପ୍ରକାଶ କରାଯାଉଛି । ୧୯୩୨ରେ ପ୍ରଥମ ପ୍ରକାଶିତ 'ବୈତରଣୀ' ଆକୃତିରେ କେବଳ କ୍ଷୁଦ୍ର ନଥିଲା, ଏଥିରେ ମୁଦ୍ରଣ-ପ୍ରମାଦ ରହିଥିଲା ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ । ସେଗୁଡ଼ିକର ଯଥାସମ୍ଭବ ନିରାକରଣ ଘଟାଇ 'ଗୌର ଚନ୍ଦ୍ରିକା' (ବୈତରଣୀ କାବ୍ୟ-ସମୀକ୍ଷା) ପ୍ରସ୍ତୁତ କରାଯାଇଛି । ଏଠାକୁ ସୁଧୀଜନଙ୍କର ଶ୍ରଦ୍ଧା ଆମ୍ଭର ଧେୟ,ସେଥିରେ ହିଁ ଯାବତୀୟ ଶ୍ରମର ସାର୍ଥକତା ।

**ଡକ୍ଟର ରବୀନ୍ଦ୍ର କୁମାର ପ୍ରହରାଜ**
ଉପସଭାପତି
ବିରୂପାକ୍ଷ ସ୍ମୃତି-ପରିଷଦ

# କୃତଜ୍ଞତା ସ୍ୱୀକାର

ପ୍ରାବନ୍ଧିକ ବିରୂପାକ୍ଷ କର ସୁଖ୍ୟାତ । ମାତ୍ର କାବ୍ୟକାର ବିରୂପାକ୍ଷ ଏବେ ବିସ୍ମୃତ । ଏଣୁ, ବିରୂପାକ୍ଷ କର ସ୍ମୃତି ପରିଷଦ ପକ୍ଷରୁ ତାଙ୍କର ସମସ୍ତ କାବ୍ୟିକ ରଚନା ସମ୍ଭାର ପୁନଃ ପ୍ରକାଶ କରିବା ପାଇଁ ଉଦ୍ୟମ କରାଯାଉଛି । ତାହାର ପ୍ରଥମ ରୂପାୟନ 'ବୈତରଣୀ' ଖଣ୍ଡକାବ୍ୟର ପୁର୍ନଉଜ୍ଜୀବନ ।

ଏହି ଅବସରରେ କବିଙ୍କ ସୁପୁତ୍ର ଶ୍ରୀ ସଚ୍ଚିଦାନନ୍ଦ କର ଓ ତାଙ୍କ ପରିବାର ବର୍ଗଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛୁଁ । ପ୍ରଫେସର ବାଉରୀବନ୍ଧୁ କର ବିଧିନିର୍ଦ୍ଦିଷ୍ଟ ସଂଯୋଜକ ଭାବରେ ସହାୟତା ପ୍ରଦାନ କରି ସ୍ମରଣୀୟ । ଶେଷରେ ଡ. ରବୀନ୍ଦ୍ରକୁମାର ପ୍ରହରାଜ ପୁରାତନ ଗ୍ରନ୍ଥଟିର ସୁସଂପାଦନା କରିଥିବାରୁ ଆନ୍ତରିକ ଧନ୍ୟବାଦ ଜଣାଉଛୁଁ ।

ଓଡ଼ିଆ ପାଠକ ସମାଜ ପ୍ରତି ପରିଷଦର ଏହା ସହସ୍ରାବ୍ଦର ଉପହାର ।

ତା. ୨୫.୧୨.୧୯୯୯

ଖଗେଶ୍ୱର ମହାପାତ୍ର
ସଭାପତି
ବିରୂପାକ୍ଷ କର ସ୍ମୃତି ପରିଷଦ, ଓଡ଼ିଶା

# ବୈତରଣୀ

ମା-ବୈତରଣୀ ନଈ ଗୋ ! ଧନ୍ୟ ଜୀବନ ତୋର
ଗୋନାସା ଶଇଳ କନ୍ଦରେ କଲୁ ତପସ୍ୟା ଘୋର ।
ତୋଷ ଲଭି ବିହି ବରିଲେ ତୋତେ ଦେବ ଆସନେ
ନିୟୋଗିଲେ ଯୁଗେ ବିଯୁଗେ ପୁଣ୍ୟ କର୍ମ୍ମ ସାଧନେ ।
ସେହିଦିନୁ ଜଗି ରହିଛୁ ମା ! ବୈକୁଣ୍ଠ ଦ୍ୱାର
ନ ଲଭଇ କେହି ବୈକୁଣ୍ଠ ତୋତେ ନ ହୋଇ ପାର ।
ଯୋଗ୍ୟ ବିଧି ଯାହା ଘେରିଛୁ ମର୍ତ୍ତ୍ୟ ବୈକୁଣ୍ଠ ଧାମ
ଯହିଁ ଯଜ୍ଞ-ବହ୍ନି ସମ୍ଭବ ବରାହର ନିଶାଣ ।
ତୋ ପାଶେ ଫିଟାଇ ପରାଣ ଡାକେ ଯେ ନାରାୟଣ
ନିଶ୍ଚିତ ତରଣୀ ହୋଇ ତୁ ଦେଉ ସ୍ୱର୍ଗ ଅୟନ ।
ବିଷ୍ଣୁ ବିଷ୍ଣୁଭକ୍ତ ଦୁହିଁଙ୍କ ଡାକ ଶୁଣିବାପାଇଁ
ନିୟୋଗୀ ହୋଇ ତୁ ଧାଇଁଛୁ ଯୋଗୀ କର୍ଣ୍ଣ ପତାଇ ।

ଉତ୍କଳର ସରସ୍ୱତୀ ଗୋ ଯାଜିପୁର-ମେଖଳା
ନାରିକେଳ ପୂଗ ଚମ୍ପକ ବିଲ୍ୱକୁଞ୍ଜ ବତ୍ସଳା ।
ବିରଜା ସାବିତ୍ରୀ ହୃଦୟ ବ୍ରହ୍ମା ପୂତ ଗହଣେ
ଗାଉଥିଲେ ଶାମ ତୋ କୂଳେ ଦିନେ ଋଷି ବ୍ରାହ୍ମଣେ ।
ଆର୍ଯ୍ୟ କଣ୍ଠୁ ଉଠି ମଧୁର ମନ୍ତ୍ର ସଙ୍ଗୀତ ରଙ୍ଗେ
ମିଶୁଥିଲା ତୋର ପବିତ୍ର ମେଳେ ଅନନ୍ତ ସଙ୍ଗେ ।
ଦଶ ସସ୍ର ତତ୍ତ୍ୱ ଦରଶୀ ଯେବେ ପୃଥ୍ୱୀ ଦେବତା
ଯାଜିପୁର କ୍ଷେତ୍ର ମଣ୍ଡଳେ ଲଭିଥିଲେ ଏକତା ।
ନଭେ ନଭୋଗାମୀ ଦେବଙ୍କ ଦିବ୍ୟ ବିମାନବର
ଘେନୁଥିଲା ହୋଇ ବିଦିଗ ଘଟା ଯଜ୍ଞ ଧୂମର ।
ଦିବ୍ୟ ନେତ୍ରେ ଲଭି ଋଷିଏ ଗୁଢ଼ ତତ୍ତ୍ୱ ସକଳ
ବଢ଼ାଇ ଥିଲେ ମା ବଖାଣି ବିଶ୍ୱ ଜ୍ଞାନ ସମ୍ବଳ ।

ଯାଜପୁରେ ଯେବେ ପୁଛିବ ଏ କି ସତ୍ୟ ବାରତା
ଅଗଣା ସ୍ଥପତି କହିବେ ଏହା ନୁହେ ଅନ୍ୟଥା ।

ମା-ଲୋ ! ତୋର ଯେ ବାଲୁକା କଣା ନୁହେ ସିକତା
ସରବେ ଗୋଟିଏ ଗୋଟିଏ ତୋର ସଙ୍ଗୀ ଦେବତା ।
ଚକ୍ଷୁହୀନ ନର ନ ଜାଣି ଏତେ ଦେବତା ଠୁଳ
ଅନାଦର ପଦେ ଦଳଇ ଦମ୍ଭ କରିଣ ମୂଳ ।
ନୟନ ଅଗ୍ରତେ ଅୟୁତେ ନିତି ନେଉଛି ଯମ
ଧାତୁ ଗଢ଼ା ଦେହ ବହିଲା ପରି ସବୁରି ଢମ ।
ଦୟାମୟୀ ଜନନୀ ଲୋ ତୁ ଖେଦ ନ ଭରି ହୃଦେ
ଦେଉଛୁ ସରବେ ଆଶ୍ରୟ ସଦା ତୋ'କୂଳେ ମୁଦେ ।
ପ୍ରଖର ଆକାରେ ଜାଳୁଛୁ ଏ ଯେ ନିଆଁ ଶ୍ମଶାନେ
ପୋଡ଼ି କଳୁଷ କି ନେଉଛୁ ନିଜ ସ୍ଥାନେ ସନ୍ତାନେ । (୧)
ମହତ ଜନର ନନ୍ଦିନୀ ଯେଣୁ ମହତ୍ତ୍ୱ ଜଣା
କେ ଧର୍ମ୍ମୀ କେ ପାପୀ ତୋହର ତେଣୁ ନ ଥାଏ ଗଣା ।

ତ୍ରିକୋଣେ ବିରାଜି କିଲାଟ ଈଶ ବିଲ୍ୱ ବରୁଣ
ତୋ' ତୀର କ୍ଷେତ୍ରର କୀରତି ଘୋଷୁ ଅଛନ୍ତି ପୁଣ । (୨)
ଯାହା ଶକ୍ତି ପୀଠ ବିରଜା - କ୍ଷେତ୍ର ନାମେ ବିଦିତ
ତନ୍ତ୍ର ମହାଶାସ୍ତ୍ର ହୋଇଲା ଯେଣୁ ତହିଁ ଉଦିତ ।
ଯହିଁ କହିଛନ୍ତି ଉତ୍କଳୀ ବିନ୍ଧ୍ୟ ଗିରି ଉତ୍କଳେ
ଭାରତର କଟି-ରସନା ବିନ୍ଧ୍ୟ ଅଚଳ ଛଳେ । (୩)
ବିନ୍ଧ୍ୟ ନିବାସିନୀ ବିରଜା ଅଙ୍ଗୁ ଶକତି ଚଳି
କରୁଥିଲା ମାତୃସନ୍ତାନେ ପରନାଶନେ ବଳୀ ।

ବୌଦ୍ଧ ଜୈନ ଶୈବ ବୈଷ୍ଣବ ତୁହି ସବୁରି ପ୍ରିୟା
ନାଚିଛି ତୋହରି ଦର୍ଶନେ ସଦା ସବୁରି ହିଆ ।

---

୧। ବୈତରଣୀ ଗର୍ଭରେ ଦଶାଶ୍ୱମେଧ ଘାଟରେ ଗୋଟିଏ ଶ୍ମଶାନ ଅଛି ।
୨। କିଲାଟେଶ୍ୱର, ବିଲ୍ୱେଶ୍ୱର ଓ ବରୁଣେଶ୍ୱର ମନ୍ଦିରମାନ ବିରଜା କ୍ଷେତ୍ରର ସୀମା ଅଟନ୍ତି ।
୩। ଯେଉଁଠାରେ ବିରଜାଙ୍କର ମନ୍ଦିର ଅବସ୍ଥିତ ତାହାକୁ ବିନ୍ଧ୍ୟ ଗିରି କୁହାଯାଏ ।

ଯାଜପୁର ଦେବ ଆଳୟେ ଅବା ବନ ପ୍ରାନ୍ତରେ
ବୌଦ୍ଧ ଜୈନ କେତେ ମୂରତି ପଡ଼ି ଅତୀତ ସ୍ମରେ ।
ଯହିଁ ଦେଖ ତହିଁ ଜନନୀ ! ଯୋଗାସନେ ମୂରତି
କଳା ଚାତୁରୀରେ ଥାପିଲେ ବୌଦ୍ଧ ଜୈନ ଭୂପତି ।
ସହିଲେଣି ମୂକ ସନ୍ୟାସୀ କେତେ ଭାଗ୍ୟ କଷଣ
ନ ଭାଙ୍ଗନ୍ତି ଯୋଗ ତେବେ ଟି ଅତୀତର ଦର୍ପଣ ।
ବିକୃତ ଶରୀର କାହାର କାର ଅଙ୍ଗ ବିନାଶ
କାର ଶିରେ ଜଟା ବଲ୍ଲରୀ କାର ବଲ୍ମୀକେ ବାସ ।
କାହିଁ ଅବା କେହି ଯୋଗୀଙ୍କ ପୀଠ ଚଷିବାପାଇଁ
ଅକାତରେ ରଖି ଦେଇଛି ସ୍ଥାନାନ୍ତରେ ଉଠାଇ ।
ବୁଡ଼ିଲାଣି କାହିଁ ଯୋଗୀଙ୍କ ଶିର ମୃତ୍ତିକା କୁଢ଼େ
ନିରୋଧି ପବନ ବସନ୍ତି ଯୋଗ ଆସନେ ଦୃଢ଼େ ।
କାହିଁ ପୁଣି ଗ୍ରାମ ଉପାନ୍ତେ କାଚ ବଳୟ ପିନ୍ଧି
ଅକାଳ ମୃତ୍ୟୁର ଦେବତା ବୋଲି ଲଭନ୍ତି ସିଦ୍ଧି ।
କାହିଁ ଧନୀଜନ ଅଳିନ୍ଦେ ଅବା ଗୃହ ପ୍ରାଙ୍ଗଣେ
ହାସ୍ୟ କଉତୁକ ସାମଗ୍ରୀ ହୋଇଛନ୍ତି ସଜନେ ।
ଧନ୍ୟ ଯୋଗେଶ୍ୱର ତୁମ୍ଭର ଯୋଗ ଧନ୍ୟ ବିଶ୍ୱରେ
ଜାଣୁନାହିଁ କେତେ କଷଣେ ରହି ଏକ ଲୟରେ ।
ଚରାଚର ଧରା ଧରିଛି ଏକା ତୁମ୍ଭ ଧରମ
ନ ଚିହ୍ନି ଏ ମୂଢ଼େ କରନ୍ତି କେତେ ମନ୍ଦ କରମ ।

ଅଗଣିତ ଲିଙ୍ଗ ରୂପରେ ବିଜେ ଦେବ ଈଶାନ
ଦକ୍ଷ ଜାୟା ଶାପ ବଶେ କି ହୋଇ ଅଛନ୍ତି ମ୍ଳାନ (୪)
ପୂଜିବା କାଳରେ କମଳା ଘେନି ପଦ୍ମ କୋଟିଏ
ପରଖିବା ଆଶେ ହରିଲେ ଶିବ ତହୁଁ ଗୋଟିଏ ।
ସଂଖ୍ୟା ହାନି ଦେଖି କମଳା ଛେଦି କୁଚ କମଳ
ଅରପନ୍ତେ ହେଲେ ଶଙ୍କର ଭକ୍ତାଭାବେ ବିହ୍ୱଳ ।
ଯୁଗେ ଯୁଗେ ଶିରେ ବହିବା ଇଚ୍ଛି ଇନ୍ଦିରା ସ୍ତନ

୪। ବିରଜାକ୍ଷେତ୍ର ଯାଜପୁରରେ ବହୁ ଶିବଲିଙ୍ଗ ଅଯତ୍ନାବସ୍ଥାରେ ଅଛନ୍ତି ।

ହେଉ ଏହା ବିଲ୍ୱ ପାଦପ ବୋଲି ଦେଲେ ବଚନ,
ସେହି ଦିନୁ ବିଲ୍ୱ ପର୍ଣ୍ଣରେ ଶିବ ପୀରତି ଯେଣୁ
ରହନ୍ତି ଆନନ୍ଦେ ତୋହର ବିଲ୍ୱ କୁଞ୍ଜେ କି ତେଣୁ ।
ଲକ୍ଷ୍ମୀ-ପ୍ରେମେ ବଶ ଲଙ୍ଘୁଲି ଗୃହ-ବିବାଦ ଡରେ
ପାର୍ବତୀଙ୍କୁ ଛାଡ଼ି ଅଇଲେ ଅବା ଅନ୍ୟ ଠାବରେ ।
ନାହିଁ କାହିଁ କ୍ଷେତ୍ରେ ପାର୍ବତୀ-ସ୍ଥାନ ଶିବ ଗହଣେ
ଧର୍ମ୍ମ ଇତିହାସ ଲେଖକେ ଘେନା କରନ୍ତୁ ମନେ ।
ଶାକ୍ତର ପ୍ରତିମା ଚଣ୍ଡିକା ସୌଧେଛନ୍ତି ତୋ ତୀରେ,
ଶିବ ଜାୟା ବୋଲି ଗଣନ୍ତି ନାହିଁ କେହି ମହୀରେ ? (୫)
ତୁ ହେଲେ ପ୍ରାଣୀଙ୍କ ଜନନୀ ବିଶ୍ୱ ଜନନୀ କାଳୀ
ଧୋଉଛୁ ସତତ ଚରଣ ବକ୍ଷ-ସମ୍ପଦ ଢାଳି । (୬)
କଳି ପ୍ରବଳରେ ତାନ୍ତ୍ରିକେ ନାନା ପ୍ରମାଦ ଗଣି
ଲୁଚାଇ ରଖିଲେ ତୋପାଶେ ସପ୍ତମାତୃକା ମଣି । (୭)
ଖୋଜି ଖୋଜି ବ୍ୟାସ ଯାହାଙ୍କୁ କଲେ ଲେଖନକାର
ଗଣପତି ବସି ତୋପାଶେ ଲେଖେ ତୋ ଯଶ ବାର । (୮)
ଶନି ନେତ୍ର ପାତେ ଗଣେଶ ଥରେ ହରାଇ ଶିର
ଗ୍ରହ ଭୟେ ଅବା ଲୁଚନ୍ତି ପାଶେ ରହି କାଳୀର ।
କହନ୍ତି ଦୈବଜ୍ଞ ମୁଖରେ ଦେବଗୁରୁ ଆପଣେ
ସାହା ଏକା ଦେବୀ ଆଶିଷ ଶନିଦଶା ଖଣ୍ଡନେ ।।
ପିତୃ ମାତୃ ମେଳେ କିପାଇଁ ଭୟ ଶିବ ସନ୍ତାନେ
ଉଚ୍ଚ ନୀଚ ଭେଦ କାହିଁଛି ବିଧି ଦୃଢ଼ ବିଧାନେ ।
ଯାହା ପାଇଁ ଯାହା ଭିଆଣ କେବେ ନୁହେ ଅନ୍ୟଥା
ବଦଳିବା ବୃଥା ଆଶାରେ ସବୁ ପୂଜା ବ୍ୟବସ୍ଥା ।
ସମ୍ପଦେ ବିପଦେ ସତତ ଡାକେ ଯେ ନାରାୟଣ
ଆତୁର ନୁହେ ସେ ଲଭଇ ଯେବେ ଭାଗ୍ୟ କଷଣ ।

---

୫। ଯାଜପୁରରେ ପାର୍ବତୀ ମନ୍ଦିର ନାହିଁ । ଯେଉଁ କାଳୀ ଅଛନ୍ତି ସେ ଶିବଙ୍କର ପତ୍ନୀଭାବରେ ସ୍ଥାପିତ ହୋଇନାହାନ୍ତି - ଶକ୍ତିପୂଜାର ଚିହ୍ନ ମାତ୍ର ।

୬,୭,୮, କାଳୀ, ସପ୍ତମାତୃକା ଓ ଗଣେଶଙ୍କର ମନ୍ଦିରମାନ ଯାଜପୁରରେ ଏକସ୍ଥାନରେ ବୈତରଣୀର ପାର୍ଶ୍ୱରେ ଅବସ୍ଥିତ ।

ଜଗନ୍ନାଥ ଭାଇ ଭଉଣୀ ତିନି ଅଛନ୍ତି ରହି
ଯାହା ମରହଟ୍ଟ କେଶରୀ ବାର୍ତ୍ତା ଦିଅଇ କହି (୯)
ନୃପବର ବୀର ଯଯାତି ବ୍ରହ୍ମା ଆଦରେ ବରି
ଦଶ ଅଶ୍ୱମେଧ ଯଜନ ତୋର ତୀରେ ଆଚରି
ଦଶସସ୍ର ବ୍ରହ୍ମବାଦୀଙ୍କୁ ତୋଷି ଦାନ ଧରମେ
ବନ୍ଧାଇଲେ ଘାଟ ବିଘ୍ନେଶ ପାଶେ ବିଘ୍ନ ନାଶନେ। (୧୦)
ବ୍ରହ୍ମା ନଥିଲେହେଁ ରହିଛି ଆଜ୍ୟ କୁଣ୍ଡ ତାଙ୍କର
ବିରଜା-ସାବିତ୍ରୀ ସମୀପେ ବ୍ରହ୍ମା-କୁଣ୍ଡ ନାମର। (୧୧)
ବ୍ରହ୍ମା ବିଷ୍ଣୁ ଶିବ ସାମୀପ୍ୟ ଯୋଗେ ନିର୍ବାଣ ଆଶେ
ସଜାଡ଼ିଛି ବେଦୀ ବ୍ରାହ୍ମଣ କାଳୀ ଗଣେଶ ପାଶେ। (୧୨)
ପୁନର୍ଜନ୍ମ କ୍ଳେଶକାତର ଯେତେ ମୁମୂର୍ଷୁ ନର
ରଚି ସେ ବେଦୀରେ ଶୟନ ତେଜେ ପିଣ୍ଡ ନଶ୍ୱର।
ଆଶୁ ଜୀର୍ଣ୍ଣ ଘଟ ବରଜି ହଂସ ଉଡ଼ି ଚଞ୍ଚଳେ
ଶୀକର ସେଚିତ ତୋହର ଶୀତ ଅନୀଳ ବଳେ
ଶୂନ୍ୟମାର୍ଗେ ଲୋକ-ଲୋଚନ ଅଗୋଚରେ ବିଧିରେ
ଚଳି ମିଳିଯାଏ ବରାହ-ଦେହେ ଅପର ତୀରେ।

ଦେବମେଳେ ତୋର ସଲିଳେ ଅବଗାହିବାପାଇଁ
ପିତୃ ପିତାମହେ ଆସନ୍ତି ସ୍ୱର୍ଗଧାମୁ ଓହ୍ଲାଇ।
ନାଭିଗୟା ପୁଣ୍ୟ ପୀଠରେ ଶ୍ରମ ହାରିବା ଆଶେ
ମୁହୂର୍ତ୍ତେ ବିଶ୍ରାମି ଯାଆନ୍ତି ପୁଣି ସ୍ୱରଗ ବାସେ। (୧୩)
ସ୍ୱର୍ଗତ ପିତୃଙ୍କ ପଥ ଏ ନରନାରୀଏ ବାରି
ଅପରନ୍ତି ତହିଁ ପିଣ୍ଡ ମା ! ନାମ ଗୋତ୍ର ଉଚ୍ଚାରି।

---

୯। କାଳୀ ମନ୍ଦିରର ଅନତିଦୂରରେ ମରହଟ୍ଟା କୀର୍ତ୍ତି ଜଗନ୍ନାଥ ମନ୍ଦିର ବିଦ୍ୟମାନ।

୧୦। କାଳୀ-ମନ୍ଦିର ନିକଟରେ ଦଶାଶ୍ୱମେଧ ଘାଟ ଅବସ୍ଥିତ।

୧୧। ବିରଜା ମନ୍ଦିର ନିକଟରେ ବ୍ରହ୍ମାକୁଣ୍ଡ ନାମରେ ପୋଖରୀ ଅଛି। କଥିତ ଅଛି, ଏହା ବ୍ରହ୍ମାଙ୍କର ଯଜ୍ଞବେଳେ ଆଜ୍ୟକୁଣ୍ଡ ଥିଲା।

୧୨। ଗଣେଶଙ୍କ ମନ୍ଦିର ନିକଟରେ ଦଶାଶ୍ୱମେଧ ଘାଟଉପରେ ଗୋଟିଏ ବେଦୀ ଅଛି। କଥିତ ଅଛି, ଏହି ବେଦୀରେ ଶୟନକରି ଆତ୍ମା ଦେହ ତ୍ୟାଗକଲେ ସ୍ୱର୍ଗକୁ ଯାଏ। ଏହାକୁ ଅନ୍ତଃବେଦୀ କହନ୍ତି।

୧୩। ବିରଜାଙ୍କ ନିକଟରେ ନାଭିଗୟା ତୀର୍ଥ ଅବସ୍ଥିତ। ଏଠାରେ ଶ୍ରାଦ୍ଧ କରାଯାଏ।

ବିରାଜେ ଅଦୂରେ ତୋ'କୂଳେ ବୈଦ୍ୟନାଥଙ୍କ ଧାମ
ଜନହୀନ ମରୁ ପ୍ରାନ୍ତରେ ବାବାଙ୍କର ବିଶ୍ରାମ । (୧୪)
ଜଗତେ ଯେତେକ ଅସାର ସବୁ ଶିବଙ୍କ ସାର
ବିଭୂତି ବିଲିପ୍ତ ଶ୍ରୀଅଙ୍ଗ ଉଗ୍ର ଉରଗହାର ।
ଜଟା-ଶିର ଚର୍ମ୍ମ-ବସନ ଶ୍ମଶାନରେ ନିବାସ
ବୃଦ୍ଧ ବୃଷ ପୃଷ୍ଟେ ଗମନ ବିଷ କରନ୍ତି ଗ୍ରାସ ।
ଦୀନ ହୀନ ବେଶ ବିଭେଦି ରାଜେ ଦିବ୍ୟ କିରଣ
ଦୃଷ୍ଟ ସୂର୍ଯ୍ୟ ଜିଣି ଉଦେ କି ଅଦଭୁତ ତପନ ।
ପେଷି ସମୀରଣ କହନ୍ତି କର୍ଣ୍ଣେ କର୍ଣ୍ଣେ ହେ ନରେ
ତୁଚ୍ଛ ଜ୍ଞାନେ କିଛି ନ ଘେନ ବିଧି ସୃଷ୍ଟ ବିଶ୍ୱରେ ।
ତ୍ୟାଗୀ ସେହି ଥାଇ ଯାହାର ନାହିଁ ହୃଦେ ବାସନା,
ଜ୍ଞାନୀ ସେହି ଭେଦ ହୀନେ ଯେ ଦେଖେ ବିଧି-ସର୍ଜ୍ଜନା ।
ଦୁଃଖୀ ଦୁଃଖ ନିବାରଣରେ ବାବା ସଦା ଜଞ୍ଜାଳି
ପଡ଼ିଛନ୍ତି ଦେଇ ଧାରଣା ଜନେ ଜୀବନ ଢାଳି (୧୫)
କାହା ଡାକ ଆଗେ ଶୁଣିବେ ଦଣ୍ଡେ ହେଲେ ଉଛୁର
ନିଜ ଅଙ୍ଗ ଛେଦି ଡାକନ୍ତି ଅକାତରେ ଆତୁର ।

କାଳୀଙ୍କ ମନ୍ଦିର ଅଗ୍ରତେ ଶୋଭେ ଅଶୋକବନ
ଯହିଁ ଛନ୍ତି ସିଦ୍ଧି-ଦାୟକ ସିଦ୍ଧେଶ୍ୱର ସୁମନ ।
ସୁଧାଂଶୁବଦନା ଚଣ୍ଡିକା-ସ୍ନେହ ମନ୍ଦାରେ ଜାଣି
ଫୁଟାଉଛୁ ନିତି ଯହିଁ ମା ! ରଙ୍ଗ କୁସୁମରାଣୀ । (୧୬)
ମନୋମତ ମହୀରୁହରେ ଗଢ଼ା ନିକୁଞ୍ଜ ବାର
ତହିଁ ନିତି ଉଷା ବିକାଶେ ବାଳ ଭାନୁ ମନ୍ଦାର ।
ନ ଜାଣିବା ଲୋକେ କହନ୍ତି ଯାକୁ ବାଳ ତପନ
ଶିରୋ-ଭୂଷା ପାଇଁ ମା-ଙ୍କ ମା ! କରୁ ଗଠନ ।

---

୧୪। କାଳୀ ମନ୍ଦିରର ଅନତିଦୂରରେ ବୈତରଣୀ ତୀରବର୍ତ୍ତୀ ଏକ ନିର୍ଜ୍ଜନ ସ୍ଥାନରେ ବୈଦ୍ୟନାଥ ମହାଦେବ ବିଦ୍ୟମାନ ଅଛନ୍ତି ।

୧୫। କାହାରି କୌଣସି ବିଷୟରେ ବିଶେଷ ମନୋକଷ୍ଟ ହେଲେ ସେ ବୈଦ୍ୟନାଥଙ୍କଠାରେ ଧାରଣା ଦିଅନ୍ତି ।

୧୬। କାଳୀମନ୍ଦିର ଠାରୁ ବୈତରଣୀ ତୀରରେ ସିଦ୍ଧେଶ୍ୱର ମହାଦେବଙ୍କ ଉପବନ ଦେଖାଯାଏ । ସୂର୍ଯ୍ୟ ଉଇଁଲାବେଳେ କାଳୀମନ୍ଦିରଠାରୁ ଗୋଟିଏ ମନ୍ଦାର ଫୁଲ ପରି ଦେଖାଯାନ୍ତି ।

ଭକ୍ତିସିକ୍ତ ପ୍ରେମ ସଲିଳେ ତୋର ମଧୁର ତୀରେ
ସଜାଡୁ ମା ଲୋ ! କି ଶୋଭା ସିଦ୍ଧେଶ୍ୱର ବାଟୀରେ ।
ଚନ୍ଦ୍ରଚୂଡ଼ ଚୂଡ଼େ ଜଡ଼ିବା ଇଛି ରଣେ ସଙ୍ଗତ
ହେଲେ ପ୍ରାତେ ଚନ୍ଦ୍ର ସୂର୍ଯ୍ୟ କି ତେଣୁ ବହେ ରକତ ।
ପ୍ରାଚୀ ତଟେ ସୂର୍ଯ୍ୟ ସମୀପେ କେତେ ଲୋହିତ ରେଖା
ଫୁଟି କି ଚନ୍ଦ୍ରଙ୍କ ମାର୍ଗଣ ନଭେ ଯାଉଛି ଦେଖା ।
ଅବଗାହି ଦିନମଣି ହେ ! ବନୁ ଆସ ପଳାଇ
କୁଣ୍ଡାଇ ଧରିବେ ମୋ'ମା-ବକ୍ଷେ କର ବଢ଼ାଇ ।
ଦିଶିଲାଣି ମା- ସଲିଳ ଯେଉଁ ସୁବର୍ଣ୍ଣ ସ୍ତମ୍ଭ (୧୭)
ବଢ଼ାଇଛନ୍ତି କି ଆହ୍ଲାଦେ ମା-ହସ୍ତ କଦମ୍ବ ।

ଶିବ ଥାପି ଶିବ ମନାସି ରହି ଯୋଗ ବିଧାନେ
ଲଭିଥିଲେ ପରା ସିଦ୍ଧିକି ନରେ ସିଦ୍ଧ ଉଦ୍ୟାନେ ।
ଉଡ଼ି ଯାଇଛି ସେ କର୍ପୂର ଅଛି କେବଳ ଚୀର
ମାଟି ପଡ଼ି ତହିଁ ଗାଉଛି ସେହି ଅତୀତ ଗୀର ।
ସିଦ୍ଧ ବ୍ରହ୍ମଚାରୀ ହୃଦୟେ ହରିହର ସମାନ
ସ୍ୱଳ୍ପମତିଠାରେ ସମ୍ଭବ ସିନା ପ୍ରଭେଦ-ଜ୍ଞାନ ।
ତୁଳସୀରେ ସିଦ୍ଧ ପୁରୁଷେ ଯାହା ହରିଙ୍କ ପ୍ରିୟା
ବିହି ଥିଲେ ସିଦ୍ଧ କାନନେ ହର ପୂଜନ କ୍ରିୟା । (୧୮)
ଯହିଁ ସିଦ୍ଧି ଆଶେ ପ୍ରଦ୍ୟୁମ୍ନ ତୋର ପବିତ୍ର ଜଳେ
ସ୍ନାନ ସାରି ଧ୍ୟାନେ ମଜ୍ଜିଲେ ତୀର-ବେଦିକା ତଳେ । (୧୯)
ପ୍ରଦ୍ୟୁମ୍ନଙ୍କ ଗଣ୍ଡ ପ୍ରଦ୍ୟୁମ୍ନ ବେଦୀ ସେଦିନୁ ରହି
ଯୁଗେ ଯୁଗେ ଯୋଗୀବରର ଯୋଗ-ଗାଥା କହଇ ।
ସିଦ୍ଧବନେ ତୀର ପାଦପ ସିଦ୍ଧବଟ ଯା ନାମ
ସିଦ୍ଧସଙ୍ଗ ଲାଭେ ହୋଇଛି ବିଶ୍ୱେ ମୁକ୍ତି ଆରାମ ।

---

୧୭। ସୂର୍ଯ୍ୟୋଦୟବେଳେ ବୈତରଣୀ ଜଳରେ କିରଣ ପ୍ରତି-ଫଳିତ ହୋଇ ସ୍ୱର୍ଣ୍ଣ ସ୍ତମ୍ଭ ପରି ଦେଖାଯାଏ ।

୧୮। ସିଦ୍ଧେଶ୍ୱର ମହାଦେବଙ୍କୁ ଭୋଗ ଦେବାବେଳେ ତୁଳସୀ ବ୍ୟବହାର କରାଯାଏ ।

୧୯। କଥିତ ଅଛି, ପ୍ରଦ୍ୟୁମ୍ନ ଏଠାରେ ତପସ୍ୟାକରି ସିଦ୍ଧି ଲାଭ କରିଥିଲେ । ତାଙ୍କର ତପସ୍ୟା-ବେଦୀ ଓ ସ୍ନାନଗଣ୍ଡ ତାଙ୍କରି ନାମାନୁସାରେ ଅଭିହିତ ହେଉଅଛି । ଏଠାରେ ସିଦ୍ଧବଟ ନାମରେ ଗୋଟିଏ ବଟବୃକ୍ଷ ଓ ପ୍ରସ୍ତର ପାବଚ୍ଛ ଅଛି । ବୈତରଣୀ ଏଠାରେ ଉତ୍ତରବାହିନୀ ହୋଇ ସିଦ୍ଧବନକୁ ତିନିପାଖରେ ବେଢ଼ିଅଛି ।

କୁସୁମରେ ରହି ପତଙ୍ଗ ବସେ ଦେବ ମସ୍ତକେ
ଲଭନ୍ତି ମହତ ସଙ୍ଗମେ ଖ୍ୟାତି ତେହ୍ନେ ଅକ୍ରକେ ।
ଉପଳରେ ଗଢ଼ା ପାବଚ୍ଛ ବଟତଳରେ ଯାହା
ସାଧୁସେବା-ପୂଣ୍ୟଫଳ କି ଗଣ୍ଡ ଅନ୍ତକେ ତାହା ।

ପୂର୍ଣ୍ଣମାସୀ ତିଥି ନିଶାରେ ବିଧୁ ଜଳ କଲ୍ଲୋଳେ
ନାଚିବା ଛଟକେ ଅଟକେ ମନ ମାଧୁରୀ ଭୋଳେ ।
ସିଦ୍ଧ-ପାଦ-ସ୍ପର୍ଶ-ପବିତ୍ର ଗଣ୍ଡଜଳରେ ଇନ୍ଦୁ
ଗୋଳି ହୁଅଇ କି ମୁଞ୍ଚିବା ଭାଳି କଳଙ୍କ ବିନ୍ଦୁ ।
ପାବନୀ ଶଙ୍କର-ବିଭୂତି ଦେଖି ଚନ୍ଦ୍ରମା-ଅଙ୍ଗେ
ବୋଲି ହୋଇ ଗଣ୍ଡ ତା'ସଙ୍ଗେ ରାଜେ ରଜତ ରଙ୍ଗେ ।
ଦୁହେଁ ଦୁହିଙ୍କର ଗୌରବ ଲୋଡେ ସରମ ଏଡ଼ି
ମରମ ଆଳାପେ ଫିଟାନ୍ତି ବିଶ୍ୱ-ସୌନ୍ଦର୍ଯ୍ୟ-ପେଡ଼ି ।

ବୃନ୍ତମାଳା ଘନଶ୍ୟାମଳା ଦୂର ବେଷ୍ଟନୀ କୋଳେ
ନାଚେ ସଇକତ ଆସନେ ନଟୀ ଲହରୀ ଭୋଳେ ।
ମଳୟ ଅନିଳ ମନ୍ଦିରା ଧନୀ ନର୍ତ୍ତିକୀ ଖାଇ
ପ୍ରତିକ୍ଷଣେ ଦିଶେ ନବୀନା ଦେଖି ତୃପତି କାହିଁ ?
ବେଢ଼ାକାରେ ନାଚି ତରଳେ ଅବିରଳେ ସୁନ୍ଦରୀ
ବେଢ଼ି ସିଦ୍ଧବନ ବାନ୍ଧିଛି ମୋହେ ତ୍ରିପୁରା ଅରି ।

ନିସର୍ଗ ରାଇଜ ରାଣୀର ମୁକ୍ତ ବିପୁଳ ଦେଶେ
ତୁଳିବାକୁ ଆନ ସୁଷମା ସରି ହେବ କି ଲେଶେ ?
ସକଳ ସୌନ୍ଦର୍ଯ୍ୟ ଗୋଳାଇ ବିହି ସୁଧାର ରସେ
ବିଶ୍ୱପଟେ ଛବି ଯତନେ ଲିହି ହାରିବେ କଷ୍ଟେ ।
ଘୁଣାକ୍ଷର ନ୍ୟାୟେ ସିନା ଏ ସିଦ୍ଧ କାନନ-ଶୋଭା
ହୋଇଅଛି ତେଣୁ ଯୋଗୀନ୍ଦ୍ର ପ୍ରଭୁ ହୃଦୟ ଲୋଭା ।

କରୁଣାରେ ଯାର ଜାନକୀ ଲଭିଥିଲେ ଆଶୋକ
ଶୋକ ନାହିଁ ତହିଁ କହଇ ବୃଦ୍ଧ ବୃକ୍ଷ ଆଶୋକ ।

ଅଶୋକ ଅଷ୍ଟମୀ ତିଥିରେ ତହିଁ ମେଳା ସୁମରି
ଆସନ୍ତି ସତୀଏ ସୁଅଙ୍ଗ ରଙ୍ଗ ମେଳେ ଆବରି । (୨୦)
ବିଭକ୍ତ କୁନ୍ତଳ ଅନ୍ତରେ ଗାଢ଼ ସିନ୍ଦୂର ଗାର
ଚକ୍ରାହତ ରାହୁ ଦେହୁ କି ବହେ ରୁଧିର ଧାର ।
କପାଳେ ରାଜଇ ପୃଥୁଳ ଟିକା ସିନ୍ଦୂର ଅଙ୍କା
ଥୋପି ପଡୁଛି କି ଶୋଣିତ ମନେହୁଏ ଆଶଙ୍କା ।
ଘନ କେଶ ତଳେ ଲପନ ଶୋଭାକୁ ଏ ଉପମା,
ଛିନ୍ନ ଗଳୁ ଗଳିପଡ଼ିଛି ସୁଧାସାର ଚନ୍ଦ୍ରମା ।
ସ୍ୱେଦ ବିନ୍ଦୁଧୌତ କଜ୍ଜ୍ୱଳ ଲାଞ୍ଜି ନେତ୍ରାନ୍ତେ ଲେଖା
ବିଧୁ ଅଙ୍ଗ ଶୀରି ବର୍ଦ୍ଧକ ଚିର କଳଙ୍କ ରେଖା ।
ଚନ୍ଦ୍ରିକା ପୀୟୂଷ ଆଶାୟୀ ଯୁବା ନେତ୍ର-ଚକୋର
ଦୂରୁ ଆଣି ପାଶେ ବାନ୍ଧିଛି ଟାଣି ପୀରତି ଡୋର ।

ସୂର୍ଯ୍ୟାତପ ତାପେ ଆରକ୍ତ ଜବାଧରୀ କପୋଳ
ମୁଖ-ଦରପଣ ବାଡ଼େ କି ଦିଶେ ତାମ୍ବୁଳ ବୋଳ ?

ବକ୍ତ୍ର-ସରସିଜ ଖେଳାଇ ଚଳା ଲାବଣ୍ୟ-ସରେ
ଅଙ୍ଗ ଢାଳି ବାଳୀ ଆସନ୍ତି ବୋଲି ତପନ-କରେ ।
ନାସାଭୂଷା ଚାରୁ ବେସର କେଡ଼େ ଯତନେ ଖଞ୍ଜା
ହାଟକ ଗଉର କେସର କାନ୍ତି ଝଟକ ଗଞ୍ଜା ।
ଯୁବାକୁଳେ ଦେବାପାଇଁ କି ଇନ୍ଦ୍ର-ଭୂତିକି ବାଳୀ
ନୟନ ଖଞ୍ଜନ ବସାଇ ପଦ୍ମ ଦିଅନ୍ତି ଟାଳି । (୨୧)

ସହିଲୁ ନାହିଁ କି ଜାହ୍ନବୀ-ଶିବ-ସ୍ପର୍ଶ ଗାରିମା
ତେଣୁ ଦେଖାଇଛୁ ଜଗତେ ତୋର ନିଜବଡ଼ିମା ।

---

୨୦। ସିଦ୍ଧେଶ୍ୱର ମହାଦେବଙ୍କ ନିକଟରେ ଅଶୋକାଷ୍ଟମୀ ଦିନ ମେଳା ହୁଏ ।

୨୧। ଅଶୋକାଷ୍ଟମୀ ମେଳାକୁ ବହୁପରିମାଣରେ ସ୍ତ୍ରୀଲୋକ ଆସନ୍ତି । ଏଠାରେ ସେମାନଙ୍କର ଶୋଭା ବର୍ଣ୍ଣିତ ହୋଇଅଛି ।

ସିଦ୍ଧେଶ୍ୱର ବନେ ଶଙ୍କର-ପାଦେ ଶିର ଲଗାଇ
ଧାଇଁଛୁ ଉତ୍ତର ଆଶାରେ ହର୍ଷେ ବକ୍ଷ ଫୁଲାଇ । (୨୨)

ସିଦ୍ଧ ବନସ୍ଥଳୀ ନିକୁଞ୍ଜେ ରଚେ ଦେଉଳ ପାରା
ଦେଖି ମହୀ ତୋର ଉତ୍ତରେ ପକ୍ୱ କେଦାର ହାରା ।
ପଣସା ପାଟରୁ ଆରମ୍ଭି ସିଦ୍ଧ ଉଦ୍ୟାନଯାଏ
ବିହରେ ବରୁଣ-ନନ୍ଦିନୀ ତିଳେ ନରହି ଠାଏ । (୨୩)
ସଜାଡ଼ଇ ଧରା ଦେବତା ଶବଳିତ ଆସନ
କରନ୍ତି ମଧୁରେ ବିହଙ୍ଗେ ପୂଜା-ମନ୍ତ୍ର ଗାୟନ ।
ତୋହରି ସଲିଳ ସମ୍ଭାରେ ଲକ୍ଷ୍ମୀର ଏ ସମ୍ଭାର
ସଙ୍ଗୀ ଉପକାର ସଙ୍ଗୀର ସିନା ଭଲ ବେଭାର ।
ପାଶୋରେ କୁସଙ୍ଗୀ ଆନରେ ଆତ୍ମ ସମ୍ପଦ ମଦେ
ସୁସଙ୍ଗୀ ଆପଣା ସମ୍ପଦ ଢାଳେ ସଙ୍ଗୀର ପଦେ ।
କମଳା-ଆହ୍ୱାନେ ମା-ତୁ ତାର ସୁଖେ ଭାଗିନୀ
ତହୁଁ ବାରେ ବାରେ ହେଉ କି ତୀରଶସ୍ୟସେବିନୀ । (୨୪)

ତୋର ପୁଣ୍ୟ ତଟେ କେତେ ମା ତୀର୍ଥେ ହେଲେ ଗୁପତ
ମିଳାଇ ଆପଣା କୋଳରେ ଆପେ ହେଲୁ ମହତ । (୨୫)
କୋଟି ତୀର୍ଥ-ସ୍ନାନ ସୁଫଳ ତେଣୁ ତୋର ସ୍ୱରଣେ
ସ୍ନାନ-ସମାପନେ ଆସନ୍ତି ନରନାରୀ ରଭସେ ।

ତୀର୍ଥମୁଖ ଯାହା ବିପୁଳ ଅଙ୍ଗେ ତୋର ଜନନୀ ।
ଭୁବନବିଶ୍ରୁତ ସୁଯଶ ଧରେ ଯାହା ମା ! ଧନୀ !

---

୨୨। ଗଙ୍ଗା ଯେପରି ବାରାଣସୀଠାରେ ଉତ୍ତରବାହିନୀ, ସେହିପରି ବୈତରଣୀ ସିଦ୍ଧେଶ୍ୱରଙ୍କ ନିକଟରେ ଉତ୍ତରବାହିନୀ ଅଟେ ।

୨୩। ପଣସା ପାଟ ବୈତରଣୀର ଉତ୍ତରରେ, ପଶ୍ଚିମରେ ପାଟଠାରୁ ପୂର୍ବରେ ସିଦ୍ଧେଶ୍ୱରଙ୍କଯାଏ ବୈତରଣୀର ଉତ୍ତର ତୀର ଶସ୍ୟକ୍ଷେତ୍ରରେ ପୂର୍ଣ୍ଣଅଟେ ।

୨୪। ବୈତରଣୀର ଉତ୍ତର ପାର୍ଶ୍ୱବର୍ତ୍ତୀ କ୍ଷେତ୍ରମାନ ଧୋୟା ଥିବା ହେତୁ ସମୟେ ସମୟେ ବନ୍ୟାଜଳ ଶସ୍ୟ ନଷ୍ଟକରେ ।

୨୫। ପୂର୍ବେ ବୈତରଣୀ ତୀରରେ ବହୁ ତୀର୍ଥ ଥିଲା । ତନ୍ମଧ୍ୟରୁ ଅନେକ ନଦୀଗର୍ଭରେ ବିଲୀନ ହୋଇଅଛି ।

ତୀର୍ଥରାଜରାଜ-ଗୌରବେ ଯାହା ଚିର-ମଣ୍ଡିତ
ସିକତାର ଅବଗୁଣ୍ଠନେ ତାହା ଆଜି ଗୋପିତ । (୨୬)
ଅଶ୍ୱମେଧ ଯଜ୍ଞ-ସ୍ଥଳୀରେ ସ୍ରୋତ ପ୍ରବାହ ଟାଳି
ବିହୁଥିଲୁ ଅଗ୍ନି-ନିର୍ବାପ ଶାନ୍ତିସଲିଳ ଢ଼ାଳି ।
ଯଜ୍ଞସ୍ଥାନୁ ଏବେ ଅନ୍ତର ତୋର ସୁଧାର ଧାର
ଆଦିମ ଆବାସ ତୋର ମା ! ଆଜି ବାଲୁକାସାର ।
ଘୋଡ଼ାଇଲେ ମୁଖ ଜନନୀ ନିଜ ବସ୍ତ୍ର ଅଞ୍ଚଳେ
ଅଭ୍ରମେ ଟାଣଇ ସନ୍ତାନ ବାସ ସିନା ଚଞ୍ଚଳେ ।
ଭୁଲେନାହିଁ ଆନ ବଦନେ ପୁତ୍ର ବାତ୍ସଲ୍ୟ ବଶେ
ଲୋଡ଼େ ଗୁପ୍ତ ମୁଖୁ ଚୁମ୍ବନ ତେଣୁ ସେହି ହରଷେ ।
ଥାଉଁ ପୂର୍ବେ ପୂତ ସଲିଳ ପାଶେ ନବ ଅୟନେ
ସ୍ନାନ ସମୁଚିତ ପଙ୍କିଳ ତୋର ପୂର୍ବ ଆସନେ ।
ଧନ୍ୟ ଆର୍ଯ୍ୟ-ହୃଦ-ବାତ୍ସଲ୍ୟ ! ଆସି କୋଟି ସନ୍ତାନେ
ସନ୍ତୋଷ ଲଭନ୍ତି ଆଦିମ ବକ୍ଷେ ପଲ୍ୱଳ-ସ୍ନାନେ ।

ବାରିଣୀ ଯୋଗରେ ଦାଣ୍ଡରେ ପଣ୍ଡା ଯୁବକଗଣ
ଗଣ୍ଡା ଗଣ୍ଡା ମିଳି କରନ୍ତି ଯାତ୍ରୀ-ବଂଶ-ବର୍ଣ୍ଣନା (୨୭)
ହସ୍ତଗଢ଼ା ଶକ୍ତ କାଗଜେ ବହିମୁଣ୍ଡା ସଜାଡ଼ି
ଲେଖିଥାନ୍ତି ବଂଶବୃତ୍ତାନ୍ତ ତଥି ଧାଡ଼ିକି ଧାଡ଼ି ।
ତୀର୍ଥାଟନେ ଆସି ପ୍ରବେଶ ଯେବେ ବିଦେଶୀ ଜଣେ
ରୁଣ୍ଡ ହୋଇଯାନ୍ତି ତା'ପାଶେ ଚାଣ୍ଡେ ପଣ୍ଡାରୁ ପଣେ ।
କେବେ ଡକାଡ଼କି ହୁଅନ୍ତି ବାପା କକା ମଉସା
କେବେ ଯାତ୍ରୀଙ୍କର ଗହଣେ ବାକ୍ୟଯୁଦ୍ଧ ବେଉସା ।

---

୨୬। ପୂର୍ବେ ଯାଜପୁରଠାରେ ଦଶାଶ୍ୱମେଧଘାଟରେ ବୈତରଣୀ ପ୍ରବାହିତ ହେଉଥିଲା । ଆଜିକାଲି ପ୍ରାଚୀନ ନଦୀ-ଗର୍ଭ କ୍ରମେ ଉଚ୍ଚ ହେବାରୁ ଅନ୍ୟ ସ୍ଥାନରେ ଜଳ ପ୍ରବାହିତ ହେଉଅଛି । ତଥାପି ଲୋକମାନେ ମାତୃବତ୍ସଳ ସନ୍ତାନପରି ପୁରାତନ ଗର୍ଭରେ ଥିବା ସାମାନ୍ୟ ଜଳରେ ପୁଣ୍ୟଲାଭ ଉଦ୍ଦେଶ୍ୟରେ ସ୍ନାନ କରନ୍ତି ।

୨୭। ଯାଜପୁରରେ ବହୁ ତୀର୍ଥ-ବ୍ରାହ୍ମଣ ଅଛନ୍ତି - ଆଗନ୍ତୁକଠାରୁ ବୈତରଣୀ କୂଳରେ ଦାନ ଗ୍ରହଣ କରିବା ସେମାନଙ୍କର ଏକମାତ୍ର ବ୍ୟବସାୟ ।

ପାଦ ରଥ ଘାତେ ପୂରାଇ ବୀରେ ଧୂଳିରେ ଦାଣ୍ଡ
ଦେଖାନ୍ତି ଏକକୁ ଆରକ ନାନା ହସ୍ତକ କାଣ୍ଡ ।
ଅକସ୍ମାତେ ଯେବେ ହୁଅଇ ବୀର ବାଦ ବର୍ଦ୍ଧନ
ବାରି ଧାରା ସମ ବରଷେ ଅର୍ଦ୍ଧଚନ୍ଦ୍ର ମାର୍ଗଣ ।
ରଜତ-ବାସନା କରଇ ସିନା ଯୁଦ୍ଧ ଘଟନା
ନପୂରିଲେ ଆଶା କରନ୍ତି ଯାତ୍ରୀ-କୁତ୍ସାରଟନା ।
ମାରି ଖାଇ ବିପ୍ରେ ଭୁଲନ୍ତି ଲାଗି ଖାଇବା ରୀତି
ଶିଖିଥାନ୍ତି ଯେଣୁ ଶୈଶବୁ ଭିକ୍ଷା ମାଗିବା ନୀତି ।

ଜାଣନ୍ତି ନାହିଁ ଏ ପଣ୍ଡାଏ ନିଜ ପୂର୍ବ ମହତ୍ତ୍ୱ
ତୀର୍ଥ ପଣ୍ଡା ନାମେ କରନ୍ତି ତେଣୁ ଗର୍ବ ସତତ ।
ପବିତ୍ର ଗୋତ୍ରଜ ବ୍ରାହ୍ମଣ ପରା ପିତୃ ଯାଙ୍କରି
ଆତ୍ମସାଧନାରେ କଲେ ଏ ପୀଠ ତୀର୍ଥ-ଈଶ୍ୱରୀ ।
ଷଟ୍ କର୍ମ୍ମ-ନିରତ ବ୍ରାହ୍ମଣ ଦରଶନ ମାନସେ
ନିତି ନରନାରୀ ଭକ୍ତିରେ ରୁଣ୍ଡ ହେଲେ ହରଷେ ।
ଚାଣ୍ଡେ ଦିନୁ ଦିନୁ ବ୍ୟାପିଲା ଯାଜପୁର କୀରତି
ଦାନ ଦରଶନେ ଧାଇଁଲେ ବିଦେଶୀଏ ଝଟତି ।
ସ୍ନାନ ଦେବ-ସେବା ସ୍ୱର୍ଗତ ପିତୃଙ୍କର ଅର୍ଚ୍ଚନ
ଦାନାଙ୍ଗ ବିଧାନ ବୋଲିଣ ଆଦେଶିଲେ ବ୍ରାହ୍ମଣ ।
ଅଯାଚିତ ଦାନ ସାମଗ୍ରୀ ଭୋଗେ ପାଳି ଶରୀର
ତୀର୍ଥେ ଗଣାଇଲେ ସାଧକେ ମା'- ତୋ ରମ୍ୟତୀର ।
ଶାଶ୍ୱତ-ନିରତେ ଶାଶ୍ୱତ ଫଳ କର୍ମ୍ମେ ଅରଜି
ନଶ୍ୱର ସମ୍ପଦ-ସମ୍ପଦା ଥିଲେ ମନୁ ବିରଜି ।
ପବିତ୍ର ବ୍ରାହ୍ମଣ ଭରଣେ ବ୍ରତୀ ଭୂପାଳଗଣ
କର ହୀନ ଭୂମି ସମ୍ପତ୍ତି ଖଞ୍ଜିଦେଲେ ବହନ ।
ଆହା ଘୋଟିଲା କି ଦୁର୍ଦ୍ଦଶା ବ୍ରାହ୍ମଣର କପାଳେ ।
ବଂଶଧର ଆଜି ଦରିଦ୍ର ପୂର୍ବ ବିଭବେ ଭାଳେ ।
ଅଯାଚିତ ଦାନ-ଭାଜନ ହେବା ଶକତି ହାରି
ଦାନାନ୍ୱେଷୀ ବିପ୍ର କରଇ ଯାତ୍ରୀ ପାଶେ ଗୁହାରି ।

ଯାଜପୁର ଜଳ ପବନ ଭୂମି ଯା' ଘେନି ପୂତ
ତାଙ୍କରି ଦାୟାଦଙ୍କର ମା ! ଅଧୋଗତି ଅଦ୍ଭୁତ ।

ଜନତା-ସଙ୍ଘାତ ବିପଣୀ-ଶ୍ରେଣୀ ସୈକତ ବାସେ
ସଜାନ୍ତି ବଣିକେ ବାରିଣୀ-ଯୋଗେ ଲାଭ ମାନସେ ।
ଆମ୍ଭ ଉପକାର ସଙ୍ଗତେ ବିହି ଆନର ପ୍ରୀତି
ସନ୍ତୋଷ ଲଭନ୍ତି ବଣିକେ ଧରି ଉତ୍ତମ ନୀତି ।
ସନ୍ତାନେ ତୋହର ଜନନୀ ହେଲେ ଏଡ଼େ ଅଧମ
ବାଣ୍ଟି ଦେହ ତୋର ଦେଖନ୍ତି ତୁଚ୍ଛ ସମ୍ପଦ ତମ । (୨୮)
ଆସିଲେ ମେଳାକୁ ଦୋକାନୀ ସଙ୍ଗେ ଘେନି ବିପଣି
ନିଅନ୍ତି ଅଧମ ସନ୍ତାନେ ପଣି ତା'ଠାରୁ ଗଣି ।
ଅରଜି ଅଧମେ ଲକ୍ଷେ ମା ! ପକ୍ଷେ ନପାନ୍ତି ଅନ୍ନ
ପାପ-ବିନାଶନେ ବିହୁ କି ଅଳ୍ପଦିନେ ମରଣ ।

ଶୈଳଜା ପଦ୍ଧତି ତୋର ମା ! ଦେଖି ରଙ୍କ ମହେଶ
ଅକଳଙ୍କ ଅଙ୍କେ ରଚିଲେ ଲୀଳାସ୍ଥଳୀ ଅଶେଷ ।
ମିଶିନାହିଁ ଯହିଁ କୃତ୍ରିମ କଳା ନିସର୍ଗ ରସେ
ଦିଗଙ୍ଗନା ସଙ୍ଗେ ଖେଳୁଛି ମୁକ୍ତ ଅଙ୍ଗେ ହରଷେ,
ରାଶିକୃତ ଚୂର୍ଣ୍ଣ କୌମୁଦୀ ବୋଲି ମାଜି ଶରୀର
ରସାଣିଛୁ ଧରି ରସାଣ କାଠି ବିଶ୍ୱବିଧିର,
ସ୍ୱର ତରଙ୍ଗିଣୀ ସରସ ଜାତୀ ସୁରତି ଭୋଳେ
ଆଖଣ୍ଡଳମଣି ବସନ୍ତି ତହିଁ ତୋ ପୂତ କୋଳେ ।

ପୃଥିବୀ-ପ୍ରବାଳ-ପେଡିକି ନୀଳ ନଭ ଚାଙ୍ଗଡ଼ା
ଚନ୍ଦ୍ରମା ମୁକୁର ବସାଣ ବିଶ୍ୱକର୍ମା ସଜଡ଼ା ।
ତହିଁ ହେମ ଚୌର ଆସନେ ମଣି-ମନ୍ଦିର ମଣି
ବୀଚି ବାହୁପାଶେ ବେଢ଼ଇ ଯତ୍ନେ ରଖିଛୁ ଧନୀ ।

---

୨୮। ବୈତରଣୀର ପ୍ରାଚୀନ ଗର୍ଭରେ ବାରିଣୀଯାତ୍ରା ହୁଏ । ସେହି ସ୍ଥାନ ବିଭିନ୍ନ ଜମିଦାରଙ୍କର ଜମିଦାରିର ଅନ୍ତର୍ଗତ ଅଟେ ।

ବିଷକଣ୍ଠ-ଆଜ୍ଞା ଅଧୀନ ଯେଣୁ ଉରଗ ଗଣ,
'ସର୍ପାହତ ପ୍ରାଣୀ ଲୋଡନ୍ତି ମଣିପାଶେ ଶରଣ ।
ଜାଙ୍ଗଳିକ ପ୍ରଭୁ ଗାରଡ଼ି ପଢ଼ି ଅଶ୍ରୁତ ଭାଷେ
ଆଉଁଶି ଅଦୃଶ୍ୟ ଶ୍ରୀକର ବିଷ-ପ୍ରଭାବ ନାଶେ ।
ବ୍ୟାପିଅଛି ଦୂରେ ଅଦୂରେ ମଣିଙ୍କର ଅଭିଖ୍ୟା
ଆସି ନରନାରୀ କରନ୍ତି ନାନା କାମନା ଭିକ୍ଷା ।
ବିରଚି ସମାଧି ନିର୍ବିଘ୍ନେ ଯୋଗ-ସାଧନ ଆଶେ
ବିରଜି ବସତି ଆସିଲେ ଶିବ ନିର୍ଜ୍ଜନ ବାସେ ।
ମାତ୍ରକ ଗୋଡ଼ାଇ ଅଛନ୍ତି ପଛେ ଯାଚକ ଗଣ
ଅକ୍ରୋଧେ ଦୟାଳୁ କରନ୍ତି ଭକ୍ତ-ବାଞ୍ଛା-ପୂରଣ । (୨୯)

କାହିଁ ଚନ୍ଦ୍ରବଂଶୀ ଯଯାତି ତୋର ଅଞ୍ଚଳ ନିଧି
ଉଚ୍ଛୁଳିଲା ଯାର ଉଦୟେ ବେଦଧର୍ମ୍ମ-ବାରିଧି । (୩୦)
ଅବୈଦିକ ଧର୍ମ୍ମ ପ୍ରବାହ ପ୍ଳାବି ଥିଲା ଉତ୍କଳ
ନିଭିଗଲା କାହିଁ ନିମିଷେ ଲଭି ପୟୋଧିଜଳ ।
ଉତ୍ତର ମଧ୍ୟମ ଦକ୍ଷିଣ ତିନି କଳିଙ୍ଗ ଦେଶ
ଉଡ୍ର ରାଜ୍ୟମାନ ମଣ୍ଡିଲେ ଏକଛତ୍ରେ ନରେଶ । (୩୧)
ସିଂହ ଦିଗୁ ଆସି ଭୂପତି ଗଜ ଦିଗପାଳଙ୍କ
ନାଶି ଗଜସିଂହ ସ୍ଥାପିଲେ ଦିଗଜୟ ସ୍ମାରକ । (୩୨)
ଭବଗୁପ୍ତ ଦେବ ଆୟତ୍ତ ଯେଉଁ ରାଜ୍ୟ ଉପାନ୍ତ

---

୨୯। ବୈତରଣୀର ନିମ୍ନାଞ୍ଚଳରେ ନଦୀ-ତୀରରେ ଦିଗନ୍ତ ବିସ୍ତୃତ ଏକ ନିର୍ଜ୍ଜନ ପ୍ରାନ୍ତରରେ ସୁପ୍ରସିଦ୍ଧ ଆଖଣ୍ଡଳମଣିଙ୍କ ମନ୍ଦିର ବିଦ୍ୟମାନ, ସେ ଅଞ୍ଚଳରେ ଯେଉଁମାନେ ସର୍ପାହତ ହୁଅନ୍ତି ସେମାନେ ମଣିଙ୍କର ଆଶ୍ରୟ ନେଇ ଭଲ ହୁଅନ୍ତି । ବହୁ ଦୂର ସ୍ଥାନରୁ ଅନେକ ଯାତ୍ରୀ ମଣିଙ୍କ ଦର୍ଶନପାଇଁ ଆସନ୍ତି ।

୩୦। ଯଯାତି କେଶରୀ ଉତ୍କଳରେ ବୌଦ୍ଧ ଓ ଜୈନ ଧର୍ମ୍ମ ପରିବର୍ତ୍ତେ ବୈଦିକ ବ୍ରାହ୍ମଣ ଧର୍ମ୍ମର ପୁନଃ ସ୍ଥାପନ କରିଥିଲେ ।

୩୧। ଉତ୍କଳ ବା କଳିଙ୍ଗ ତିନିଭାଗରେ ବିଭକ୍ତ ଥିଲା । ଯଯାତି ସେ ସମସ୍ତଙ୍କୁ ଏକଛତ୍ରାଧୀନ କରି ତ୍ରିକଳିଙ୍ଗାଧିପତି ଉପାଧି ଗ୍ରହଣ କରିଥିଲେ ।

୩୨। ବୌଦ୍ଧ ମତରେ ସିଂହ ଉତ୍ତର ଦିଗର ଓ ଗଜ ପୂର୍ବ ଦିଗର ରକ୍ଷକ । ଯଯାତି ଉତ୍ତର ଦେଶ ଅର୍ଥାତ୍ ଛତିଶ ଗଡ଼ର ଉତ୍ତର ଅଞ୍ଚଳରୁ ଆସି ପୂର୍ବଦେଶ ଅର୍ଥାତ୍ ଉତ୍କଳ ଜୟକରିଥିବା ହେତୁ ତାଙ୍କରି ଜୟଚିହ୍ନ ସ୍ୱରୂପ ଓଡ଼ିଶାର ମନ୍ଦିରମାନଙ୍କରେ ହାତୀ ଉପରେ ସିଂହ ବା ଗଜସିଂହ ମୂର୍ତ୍ତି ଦେଖାଯାଏ ।

ସେହି ରାଜ୍ୟସାରା ଗାଇଲେ ଶିବଗୁପ୍ତ ବୃତ୍ତାନ୍ତ । (୩୩)
ଧର୍ମ୍ମଯୁଗେ ବୀର କେଶରୀ ଧରିନାହିଁ କୃପାଣ
ରଭସେ ଉଡ଼ିଲା ସର୍ବତ୍ର ଶୈବ ଧର୍ମ୍ମ ନିଶାଣ ।
ପ୍ରେମର ବିଜୟ ବିଜୟ-ସାର ବୋଲି ଜଗତ
ତେଣୁ ସେହି ନୀତି ଅଗ୍ରଣୀ ବୀରସୁତ ଅଗ୍ରତେ ।

ଯେଦେଶ ସଲିଳେ ପବନେ ହୁଏ ଦେହ ପାଳିତ
ନିଜ ଦେଶ ବୋଲି ତାହାକୁ ବରିବାଟି ବିହିତ ।
ଯାର ଅନ୍ନ ଜଳ ଆଶ୍ରୟ ତାକୁ ପର ଯେ ମଣେ
ଆସନ ତାହାର ସତତ ମାତୃଦ୍ରୋହୀ ଗହଣେ ।

ଧନ୍ୟ ହେ ବିଦେଶୀ ଉଦାର ଧର୍ମ୍ମଧ୍ୱଜ ନରେଶ ।
ମାତୃଜ୍ଞାନେ ଯାହା ବରିଲ ଏହି ଉତ୍କଳ ଦେଶ ।
ଜନନୀ ଗୌରବ ବର୍ଦ୍ଧନ କର୍ମ୍ମେ ବଳାଇ ଆଶ
ଅନ୍ୟ ବାରାଣସୀ ରଚିଲ ବିଶ୍ୱେଶ୍ୱର ନିବାସ । (୩୪)
ଜାହ୍ନବୀ କୋଳରେ ରାଜଇ ବାରାଣସୀ ଯେସନ
ବୈତରଣୀ ଯାଜିପୁର-ଶ୍ରୀ ବଢ଼ାଇଲ ତେସନ ।
ବିଶ୍ୱନାଥ ସମ ସ୍ଥାପିଲ ଆଖଣ୍ଡଳ ଈଶ୍ୱର
ଯହିଁ ଶତକ୍ରତୁ କ୍ରତୁରେ ଲଭିଥିଲେ ସୁବର ।
ଆଖଣ୍ଡଳ ପାର୍ଶ୍ୱ ଆଶ୍ରିତ ଛିନ୍ନ ମୂରତି ଚୟ
ଜଣାଇ ଦିଅନ୍ତି ଦର୍ଶକେ ଉତ୍କ୍ର କାଶୀର ବୟ ।
ହରିଶ୍ଚନ୍ଦ୍ର ସମ ଆପଣେ ବୀରଦାନ ଧରମେ
ଅଶ୍ୱମେଧ ଘାଟ ବାନ୍ଧିଲ ପୂତ ତିନି ଭୁବନେ ।
ଯହି ସ୍ନାନ ସାରି ପ୍ରଣମି ଆଖଣ୍ଡଳ ଈଶ୍ୱର
ବିଶ୍ୱନାଥ ପୂଜା ସୁଫଳ ଲଭେ ନିଶ୍ଚିତେ ନର ।

---

୩୩। ଯଯାତିଙ୍କର ପିତାଙ୍କର ନାମ ଭବଗୁପ୍ତ ଦେବ । ସେ ପ୍ରଥମେ ଓଡ଼ିଶାର ପଶ୍ଚିମ ସୀମାନ୍ତ ପ୍ରଦେଶ ଜୟ କରିଥିଲେ । ପରେ ଯଯାତି ସମଗ୍ର ଓଡ଼ିଶା ଜୟକଲେ ।

୩୪। ଯଯାତି ବାରାଣସୀର ଅନୁକରଣରେ ଯାଜପୁରକୁ ଗଢ଼ିଥିଲେ । ଯଥା - ଏକସ୍ଥାନରେ ଗଙ୍ଗା, ବିଶ୍ୱନାଥ ଓ ହରିଶ୍ଚନ୍ଦ୍ର ଘାଟ । ଅନ୍ୟ ସ୍ଥାନରେ ବୈତରଣୀ, ଆଖଣ୍ଡଳେଶ୍ୱର ଓ ଦଶାଶ୍ୱମେଧ ଘାଟ ।

ତୀର୍ଥ ରାଜି ଉପାଦାନରେ ଗଢ଼ା ଦିବ୍ୟ ଚାଙ୍ଗଡ଼ା
ଯାଜିପୁରୀ ଆଜି ରାଜଇ ତୁମ୍ଭ ଯତ୍ନେ ସଜଡ଼ା ।
ହୃଦୟ ଉଦ୍ୟାନେ ପୁଷ୍ପିତ ଭକ୍ତି ପ୍ରେମ ସୁଜ୍ଞାନ
ସୁମନ ସୁମନେ ସଜାଇ ତହିଁ ପୂଜା-ବିଧାନ
ବିହି ବିହରନ୍ତି ପଣ୍ଡିତେ ନିତି ନିତ୍ୟ ଆବାସେ
ଅନନ୍ତ ସଙ୍ଗୀତେ ତୋ' ଯଶ ଗାଇ ଅମର ଭାଷେ ।

ଶୁଭଦ ଶ୍ରୀଫଳ ମଣ୍ଡିତ ଶ୍ୟାମତରୁ-ଶିଖର
ଚିହ୍ନା ଏ ତୋ'ତୀରେ ବ୍ରାହ୍ମଣ-ପୀଠ ଶାସନବର ।
କହ୍ନି ଶାସ୍ତ୍ରପ୍ରିୟ ବ୍ରାହ୍ମଣେ ସରସ୍ୱତୀ ହରଷ
ସଜାଇଛନ୍ତି କି ସରାଗେ ଆବାହନ କଳଶ ।
ତୁମ୍ଭରି କୀରତି କେଶରୀ ! ଭୂଦେବଙ୍କ ମିଳନ
ଅମର ବର୍ଣ୍ଣେ ଯା ହୋଇଛି ଯୁଗ ଦେହେ ଲିଖନ ।

କେଣେ ଛାଡ଼ିଗଲ ପ୍ରଭୁ ହେ, କୋଟି ହୃଦ ଚନ୍ଦନ
ତବ ରାଜ୍ୟେ ଦଗ୍ଧ ପରାଣ ଲୋଡ଼େ ଶୀତ ଲେପନ ।
ପୋଡ଼ିଯାଏ ଆଜି ସମାଜ ଅତ୍ୟାଚାର-ବହ୍ନିରେ
ତୁମ୍ଭ ଗଢ଼ା ମୁକ୍ତ ମଣ୍ଡପ ନାହିଁ ଯେଣୁ ବିଧିରେ ।
ଯହିଁ ବସି ବିଜ୍ଞ ବ୍ରାହ୍ମଣେ ଲୋକ ରକ୍ଷା ବିଧାନ
ଅର୍ପୁଥିଲେ ତୁମ୍ଭେ ଶ୍ରୀକରେ ତାହା ଆଜି ଶ୍ମଶାନ ।
କିମ୍ବଦନ୍ତି କହେ ପୂରବ ମୁକ୍ତି-ମଣ୍ଡପ ଧାମ
ବହିଛି ଇସ୍ଲାମ ଯାଜକ-ପୂଜ୍ୟ କବର ନାମ । (୩୫)
ଥିଲେ ପୂର୍ବ ଯୁଗେ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ବ୍ରାହ୍ମଣ
ଚାରିବର୍ଣ୍ଣ ଘେନି ଯେ ଯାହା' ଗୁଣ କର୍ମ୍ମ ଲକ୍ଷଣ ।
ଚାରିରୁ ଚାରିଶ ହେଲାଣି ଜାତି ସମାଜେ ଆଜି
ଯାଏ ପରା ଜଣେ ନରକେ ଛାଇ ଆନର ବାଜି ।
ବ୍ରହ୍ମ ଜ୍ଞାନ ହୁଡ଼ି ବ୍ରାହ୍ମଣ ଶୂଦ୍ର କରମେ ମାତି
ଭାରତୁଲ୍ୟ ଯଜ୍ଞୋପବିତ ବହି ଖୋଜୁଛି ଖ୍ୟାତି ।

---

୩୫। କଥିତ ଅଛି, ଯାଜିପୁର କିଲଟରି କଚେରି ଆଗରେ ଯେଉଁ ପୀର ଆସ୍ଥାନ ଅଛି ତାହା ପୂର୍ବେ ମୁକ୍ତିମଣ୍ଡପ ଥିଲା ।

ନ ଜାଣି ଗାୟତ୍ରୀ ମରମ ଘେନି ଚନ୍ଦନଟିକା
ବିକି ପିତୃଙ୍କର ସୁନାମ ଅରଜୁଛି ଜୀବିକା ।
ଭରଣ ରକ୍ଷଣ ପାଳନ ନାହିଁ କ୍ଷତ୍ରିୟ କୁଳେ
ଘାରି ହେଉଛନ୍ତି ସରବେ ବୃଥା ମର୍ଯ୍ୟାଦା ମୂଳେ ।
ଜଗତେ ଅତୁଲ୍ୟ ହିନ୍ଦୁର ବରକନ୍ୟା-ମିଳନ
ଅଗ୍ନି-ମୁଖ ହରି ସାକ୍ଷାତେ ତାହା ଚିର ବନ୍ଧନ ।
ମାତ୍ରକ ପାପିଷ୍ଠ ସମାଜ କ୍ରୁର ବିଧିର ଭଙ୍ଗୀ
ବାଛେ କି କୁମାର କୁମାରୀ ନିଜ ଜୀବନ ସଙ୍ଗୀ ।
ଖେଳା ପିତୁଳାର ସମାନେ ଗୁନ୍ଥା ପିତା ନିଦେଶେ
ଦୁହିଁଙ୍କ ଅଚିହ୍ନା ଦୁଇଟି କ୍ଳେଶ ଲଭନ୍ତି ଶେଷେ ।
ପତି କି ଦରବ ନ ଜାଣୁ ଶୀରି ହରାଇ ସତୀ
ଶୂନ୍ୟ ନେତ୍ରେ ପୂର୍ଣ୍ଣ-ବୟସୀ ଗାଏ ଘୋରଦୁର୍ଗତି ।
ଆଖି ଆଗେ ଦେଖି ଲୁଠିବା ଘରୁ ଧନ ତସ୍କର
ଭାଇ ଡାକ ଭାଇ ନ ଶୁଣେ ଜାତି ନାଶ କାତର ।

ଯଜ୍ଞପ୍ରିୟ ନରନାଥ ହେ ଜ୍ଞାନୀ ଶାସ୍ତ୍ର ବିଧାନେ
ଯଜ୍ଞତଟି ପାଇଁ ସାବିତ୍ରୀ ଗଢ଼ାଇଲ ପାଷାଣେ ।
ଯଜ୍ଞେ ଲୋଡା ବ୍ରହ୍ମା ସସ୍ତ୍ରୀକ ବେଦ ବିଧି ପୁରାଣ
ତେଣୁ ଯଜ୍ଞ କ୍ଷେତ୍ରେ ସାବିତ୍ରୀ ଦେବୀ ମୂର୍ତ୍ତି ଭିଆଣ ।
ବିରଜା ନାମରେ ବିଦିତା ସେହି ମୂର୍ତ୍ତି ବିଶ୍ୱରେ
ଆଦ୍ୟା ଦୁର୍ଗା ବୋଲି ପୂଜନ୍ତି ଆଜି ବିଜ୍ଞାନୀ ନରେ । (୩୬)
ପଣ୍ଡା ମାଘ ଅମାବାସ୍ୟାରେ ଦେବୀ ଜନ୍ମ ଜ୍ଞାନରେ
ସଜାଇ ସାବିତ୍ରୀ ବେଶରେ ପୂଜେ ବିଷ୍ଣୁ ମନ୍ତ୍ରରେ ।
ବିଜୟା ଦଶମୀ ତିଥିରେ ଦେବୀ ସେବକ ଗଣେ
କଳ୍ପି ଚନ୍ଦ୍ର ସୂର୍ଯ୍ୟ ରଥାଙ୍ଗେ ବ୍ରହ୍ମା ସାରଥି ପଣେ ।

---

୩୬। ଯାଜପୁରରେ ଯେଉଁ ବିରଜାଦେବୀ ଅଛନ୍ତି ସେ ବୋଧହୁଏ ଯଜ୍ଞବହୁଳ କ୍ଷେତ୍ରରେ ପ୍ରଥମେ ବ୍ରହ୍ମାପତ୍ନୀ ସାବିତ୍ରୀ ରୂପରେ ପ୍ରତିଷ୍ଠିତା ହୋଇଥିଲେ । ମାଘ ଅମାବାସ୍ୟା ଦିନ ତାଙ୍କର ବେଶକୁ ସାବିତ୍ରୀ ବେଶ କୁହାଯାଏ । ସେଦିନ ବୈଷ୍ଣବ ମନ୍ତ୍ରରେ ତାଙ୍କର ପୂଜା କରାଯାଏ । ବୋଧହୁଏ ପରବର୍ତ୍ତୀ ଯୁଗରେ ଶାକ୍ତମାନେ ତାହାଙ୍କୁ ଶାକ୍ତ ଆବରଣ ଦେଇଅଛନ୍ତି ।

ଚାରି ବେଦେ ଅଶ୍ୱ ମନାସି ରଥେ ଘେନି ପ୍ରତିମା
ପ୍ରଚାରନ୍ତି ଯାତ୍ରା-ଉତ୍ସବେ ବେଦ-ମାତା ବଡ଼ିମା ।

ବେଦ-ଧର୍ମ୍ମ-ରକ୍ଷାବ୍ରତୀ ହେ ଯଜ୍ଞପ୍ରିୟ ଭୂପତି
କ୍ଷାତ୍ର ବଂଶ ବକ୍ଷ କୌସ୍ତୁଭ ସୁବିମଳ କୀରତି ।
କହେ ଯଜ୍ଞପୁରୀ ତୁମ୍ଭରି ଯଜ୍ଞ କୁଣ୍ଡ-ଗୌରବ
ସାକ୍ଷୀ ଛନ୍ତି ଦେବ ବରାହ ହୋମ ବହ୍ନି ସମ୍ଭବ ।
ଶୁଣିଛୁଁ ପୁରାଣେ ତୁମ୍ଭରି ଯଜ୍ଞକୁଣ୍ଡ ଅନଳୁ
ସମ୍ଭବିଲେ ଦୁଇ ବରାହ ମୂର୍ତ୍ତି ଭକତି ଫଳୁ ।
ଅଶ୍ୱମେଧ ଯଜ୍ଞ-ପବିତ୍ର ଘାଟ ଉପାନ୍ତ ବନେ
ବାଣ୍ଟୁଥିଲେ ମୁକ୍ତି-ସମ୍ପଦ ଦୁହେଁ ଦିବ୍ୟ ଲୋକନେ ।
କାଳେ ଆଳିପତି ଖଟିଲେ ପ୍ରଭୁ ପଦସେବାରେ
ହେଲା ଯେଣୁ ଦୟା ପ୍ରଭୁର ତିଳେ ସୁପାତ୍ରଠାରେ
ଗଙ୍ଗ ବଂଶ ଭୂଷା ସନ୍ତାନେ ସଦା ବିଷ୍ଣୁଭକତ
ହେଲେ ତେଣୁ ଆଳିମଣ୍ଡନ ବଂଶେ ପ୍ରଭୁ ଆସକ୍ତ ।
ଆଳି-ପତି ନିତି ଧାଇଁଲେ ଦରଶନ ଲାଳସେ
ପୀଡା ଦେଲା ଭକ୍ତ-କଷଣ ଭକ୍ତ-ଭକ୍ତ-ମାନସେ ।
ଦେଲେ ସ୍ୱପ୍ନାଦେଶ ବରାହ "ଆମ୍ଭ ଦୁଇରୁ ଜଣେ
ନେଇ ପୂଜ ନରପତି ହେ ! ନିଜ ନବର ସନେ ।"
ଇଷ୍ଟ ହେଲେ ଏକ ମୂରତି ସେହିଦିନୁ ଆଳୀରେ
ରହିଛନ୍ତି ଆନ ଜନମ ସ୍ଥାନେ ଜନନୀ-ତୀରେ ।
ଗଢ଼ିଥିଲେ ଯହିଁ ଆଳୀଶ ନିଜବାସ-ଉଆସ
ଯଜ୍ଞପୁରେ 'ରଜାନବର' ନାମ ତାର ବିକାଶ । (୩୭)

---

୩୭। କଥିତ ଅଛି ଅଶ୍ୱମେଧ ଯଜ୍ଞର ଶେଷରେ ହୋମ-ଅଗ୍ନିରୁ ଦୁଇଟି ବରାହ ମୂର୍ତ୍ତି ବାହାରିଥିଲେ । ସେ ଦୁଇଟି ଯାଜିପୁରରେ ପୂଜିତ ହେଉଥିଲେ । କାଳକ୍ରମେ ଆଳିରାଜ୍ୟର ରାଜା ଉକ୍ତ ବରାହଙ୍କର ପ୍ରଧାନ ଭକ୍ତ ହୋଇଉଠିଲେ । ସେ ପ୍ରତିଦିନ ଦର୍ଶନ ସକାଶେ ଆଳିରୁ ଯାଜିପୁର ଆସୁଥିଲେ ଓ ସମୟେ ସମୟେ ରହିବାପାଇଁ ଯାଜିପୁର ସହର ମଧ୍ୟରେ ଥିବା 'ରାଜାନବର' ନାମକ ସ୍ଥାନରେ ଉଆସ ତୋଳାଇଥିଲେ । କେତେକଦିନରେ ଗୋଟିଏ ମୂର୍ତ୍ତିକୁ ଆଳିକୁ ନେଇ ଯିବାପାଇଁ ରାଜାଙ୍କୁ ସ୍ୱପ୍ନାଦେଶ ହେବାରୁ ରାଜା ଗୋଟିଏ ମୂର୍ତ୍ତି ନେଇଥିଲେ ।

ଯାଜିପୁରୀ କୀର୍ତ୍ତି ସୁନ୍ଦରୀ ବରା ନଗରୀହାରା
କଣ୍ଠମାଳା ତୁହି ଜନନୀ ଚାରୁଧାରା ସୁଚିରା ।
ପଦକ ତହିଁକି ବରାହ-ଧାମ, ଅଙ୍ଗଧବଳ,
ମଧ୍ୟେ ଯାର ନୀଳ-ସୁନ୍ଦର ଦେବ-ମୂର୍ତ୍ତି ବିମଳ ।

କ୍ଷାତ୍ର ବଳେ ଜିଣି କୁବେର ସ୍ୱର୍ଣ୍ଣ ଚମ୍ପକ ଆଣି
ତୋଷିଥିଲେ ବୀର ଅର୍ଜ୍ଜୁନ ଶିବ ମାନସ ଜାଣି ।
ଖଣ୍ଡ ଶୈଳ-ଚୂଳେ ଖଣ୍ଡେନ୍ଦୁ-ମଣ୍ଡା ବିତାନ ତଳେ
ତ୍ରିଲୋଚନ ଈଶ ସ୍ଥାପିଲ ଚମ୍ପା କୁଞ୍ଜ ଗହଳେ । (୩୮)
ଯହିଁ ପଲ୍ଲବର ସନ୍ଧିରେ ଜ୍ୟୋସ୍ନା ଅଙ୍ଗୁଳି ଗଳି
ପରଶେ ପ୍ରଭୁଙ୍କ ଚରଣ ଯେହ୍ନେ ଚମ୍ପକ କଳି ।
ଶ୍ୟାମ ତରୁ ଘନ ଗହଳେ ଦେବ ସୌଧ ପ୍ରକଟେ
ରାଜେ କି ଧବଳ କୈଳାସ ନୀଳ ଗଗନ ପଟେ ।
ଅରୁଣ କିରଣେ ଟାଣଇ ସୌଧ ଅଙ୍ଗରେ ଗାର
ରଙ୍ଗେ ଉଷା ନବ ଯୁବତୀ ଅବା ସୁବର୍ଣ୍ଣ ହାର ।
କିବା ଶିବଶିରେ ଉଛୁଳି ବିଷ୍ଣୁପଦୀର ଧାର
ଗିରି ଦେହ ଭେଦି ଖେଳାଏ ସ୍ୱର୍ଣ୍ଣ ତରଙ୍ଗ ବାର ।

ବିଶ୍ୱ-ରୂପ ଶିବ ବୋଲି କି ହେଲା ହୃଦେ ଭାବନା
ସୁବିଶାଳ ତିଳଭାଣ୍ଡେଶ ମୂର୍ତ୍ତି କଲ ସ୍ଥାପନା ।
ନିତି ନିତି ତିଳ ପ୍ରମାଣେ କଳେବର ଯାହାର
ବଢୁଥିବା ସିଦ୍ଧି ଜଗତେ ଲଭି ଅଛି ପ୍ରସାର । (୩୯)
ତିଳଭାଣ୍ଡ ଅନୁରୂପରେ ପାଶେ ଦେବୀ ମୂରତି
ଅଷ୍ଟାଦଶ ଭୁଜେ ସାଜିଛି ତନ୍ତ୍ର ନିପୁଣ ଯତି ।
କି ଦିବ୍ୟ ଆବେଗେ ଥାପିଛି ଅଗ୍ନୀଶ୍ୱର ସୁମନ
ଦରଶନ ଯାର ଲୁଠାଏ ଦୃଢ଼ ନାସ୍ତିକ ମନ ।

---

୩୮। ବିରଜା ମନ୍ଦିରର ଅନତିଦୂରରେ ଏକ ଅତି କ୍ଷୁଦ୍ର ପାହାଡ଼ଉପରେ ତ୍ରିଲୋଚନେଶ୍ୱର ମହାଦେବଙ୍କର ମନ୍ଦିର ଅଛି । ଏଠାରେ ବହୁତ ଚମ୍ପାଗଛ ଅଛି ।

୩୯। ତ୍ରିଲୋଚନେଶ୍ୱର ମହାଦେବଙ୍କ ମନ୍ଦିର ନିକଟରେ ସୁବୃହତ୍ ତିଳଭାଣ୍ଡେଶ୍ୱର ଲିଙ୍ଗ ବିଦ୍ୟମାନ । ଲୋକେ କହନ୍ତି, ଏହି ଲିଙ୍ଗ ଦିନକରେ ତିଳେଲେଖାଏଁ ବଢ଼େ ।

ସତ୍ୟ ସତ୍ୟ ତଥି ଶିବ କି ବରି ଅଛନ୍ତି ସ୍ଥିତି
ଦେବତା ସମ୍ଭବ ରୀତିରେ ବର୍ଣ୍ଣ ବଦଳେ ନିତି । (୪୦)
ଘନ କୃଷ୍ଣ ଆଦ୍ୟ ପ୍ରହରେ ରଙ୍ଗବପୁ ଦ୍ୱିତୀୟେ
ବିଭୂତି ଧବଳ ରାଜନ୍ତି ମହାପ୍ରଭୁ ତୃତୀୟେ ।

କୁଶଭଦ୍ରା ନାମେ ମା-ତୋ ସୁତା ହୃଦୟ ହାର
ପୁଣ୍ୟତୋୟା ବୋଲି ପୁରାଣ ଖ୍ୟାତି ପ୍ରଚାରେ ଯାର ।
କୁଶାଙ୍କୁରେ ଭଦ୍ର ବିଲୋକି ଯହିଁ ତୀର କାନନ
କଲେ କୁଟୀ କୋଟି କୁରଙ୍ଗ ସଙ୍ଗୀ ତାପସ ଗଣ ।
ଗଙ୍ଗାତୀର ତୀର୍ଥ ସମାନ ମଣି କର୍ଣ୍ଣିକା ଘାଟ
କୁଶଭଦ୍ରା ତଟେ ବାନ୍ଧିଲ ଧର୍ମ୍ମ ଜଗତ ରାଟ । (୪୧)
ପାଶେ ଗଢ଼ା ଶିବ ବିଶ୍ୱେଶ ଧାମ ପ୍ରାଚୀତୋରଣ
ଶିବ ଦେଖି ଚକ୍ଷୁ ମେଲନ୍ତି ପରା ଦିନ ନୟନ । (୪୨)
ଉଇଁଲା ମାତ୍ରକେ ଦେଖନ୍ତି ଶୁଭ ଯେଣୁ ତପନ
ଦିନସାରା ବୁଲି କରନ୍ତି ବିଶ୍ୱହିତ ବଣ୍ଟନ ।
ଭରି ଚରାଚର ନିର୍ବିଷ କରି କିରଣ ଜାଲେ
ବିଶ୍ୱବାସୀପାଇଁ ଆରୋଗ ସୁଧାସମ୍ପଦ ଢାଳେ ।

ଅଯୁକ୍ତ କଳ୍ପନା ରାଇଜେ ସିନା ବୃଥା ଭ୍ରମଣ
ଭିନ୍ନ ସ୍ଥିତି କାହିଁ ସୂର୍ଯ୍ୟର ସେତ ଶିବ ନୟନ ।
ନିଖିଳ ସଂସାର ଶରୀର ବିଶ୍ୱରୂପୀ ଶିବର
ସୂର୍ଯ୍ୟନେତ୍ର ଫେଇ ସାଜନ୍ତି ପ୍ରଭୁ ସ୍ୱକଳେବର ।

---

୪୦। ବିରଜାଙ୍କର ଅନ୍ତଦୂରରେ ଅଗ୍ନିଶ୍ୱର ନାମରେ ଲିଙ୍ଗ ଅଛନ୍ତି । ଦିନମଧ୍ୟରେ ସେହି ଲିଙ୍ଗ ଭିନ୍ନ ଭିନ୍ନ ବର୍ଣ୍ଣ ଧାରଣ କରନ୍ତି ।

୪୧। ତ୍ରିଲୋଚନେଶ୍ୱରଙ୍କର ଅଳ୍ପଦୂରରେ କଲିଳେଶ୍ୱର ଗ୍ରାମ-ସୀମାରେ କୁଶଭଦ୍ରା ନଦୀର କୂଳରେ ମଣି କର୍ଣ୍ଣିକା ଘାଟ ବିଦ୍ୟମାନ ।

୪୨। ମଣିକର୍ଣ୍ଣିକା ଘାଟ ନିକଟରେ ବିଶ୍ୱେଶ୍ୱର ମହାଦେବଙ୍କ ମନ୍ଦିର ଅଛି । ଏହି ମନ୍ଦିରର ଦ୍ୱାର ପୂର୍ବକୁ ଅଟେ । ସୂର୍ଯ୍ୟ ଉଦିତ ହେଲେ ଶିବଲିଂଗ ଉପରେ ଖରା ପଡ଼େ । କାରଣ ମନ୍ଦିର ଖୋଲାସ୍ଥାନରେ ଅବସ୍ଥିତ । ଶିବ ଶବ୍ଦର ଅନ୍ୟ ଅର୍ଥ ଶୁଭ ।

ଘାଟେ ଋଷିକଣ୍ଠ ନିଃସୃତ ବେଦ ଧ୍ୱନି ଓଁକାର
କରୁଥିଲା ଶିବ ତପନ ମଧ୍ୟେ କୀର୍ତ୍ତି ପ୍ରଚାର ।
ଆନ ସୌଧେ ତହିଁ ଅଛନ୍ତି ଦେବ ଭୋଳା କପିଳ
ବୁଡ଼ାଇଛି ବହି ଉତ୍ତମ ଅଙ୍ଗୁ ଗଙ୍ଗା ସଲିଳ । (୪୩)
କପିଳେଶପୁର ଆଶ୍ରୟୀ ତୀର୍ଥ ଗୌରବ ବହି
ରୋପି ପଞ୍ଚବଟୀ ରଖିଛି ଗ୍ରାମ ଶ୍ମଶାନ ତହିଁ । (୪୪)
ଉତ୍କଳକାଶୀମଣି-କର୍ଣ୍ଣିକା ଏହି ପିତୃ ସଦନ
ଶୈବ ମେଳେ ଏଥି ଉଚିତ ମର ଦେହ ଜ୍ୱଳନ ।
ତିନି ଲୋକେ ଯାହା ପବିତ୍ର ତାର ଦର୍ଶନ ଆଶେ
ପ୍ରେମପୂତ ଦେବ ଚୈତନ୍ୟ ଆସିଥିଲେ ତା ପାଶେ ।
ଜାଣି ତୀର୍ଥବର ଗୌରବ ଦେବ ବୈଷ୍ଣବ ସାଇଁ
ଆଦେଶିଲେ ପରା ଶିଷ୍ୟଙ୍କୁ ଚିର ବସତି ପାଇଁ ।
ବିଶ୍ୱେଶ୍ୱରପାଶେ ସେଦିନୁ ଭକ୍ତଜନ ଗ୍ରହଣେ
ମୂର୍ତ୍ତିରୂପେ ଦେବ ଚୈତନ୍ୟ ରହିଛନ୍ତି ଆପଣେ । (୪୫)
ଧିକ୍କ ଆମ୍ଭ ବୁଦ୍ଧି ସରବେ ନୀଚ ସମ୍ପଦ ଭଳି
ବନ୍ଧାଇ ନଦୀକୁ ସରଗଭୂତି ଦେଇଛୁ ଜାଳି । (୪୬)
ଗୁପ୍ତ ହେବାପରି ହେଲାଣି କୁଶଭଦ୍ରା ଆସନ
ଅର୍ଦ୍ଧଲୁପ୍ତ ମୂକ ସ୍ଥପତି କରେ ମୂକ ଭାଷଣ ।

ପ୍ରକୃତିବତ୍ସଳ ନାଥ ହେ ତୁମ୍ଭ ପରଜାଗଣ
ନାମ ଜପ ପାଇଁ 'ଯଯାତି ତୀର୍ଥ' କଲେ ସ୍ଥାପନ । (୪୭)
ତବ ନାମ-ସ୍ତୁତ ବିଶୁଦ୍ଧି ଘେନି ତୀର୍ଥ ମହତ
ଲଭିଲାଣି ମୋକ୍ଷ ମା-ଙ୍କ ଅଙ୍କେ ହୋଇ ଗୁପତ ।

---

୪୩। ଏଠାରେ କପିଳେଶ୍ୱର ମହାଦେବଙ୍କ ମନ୍ଦିର ଅଛି । କପିଳେଶ୍ୱର ଲିଙ୍ଗ ସବୁବେଳେ ପାଣିରେ ବୁଡ଼ିଥାନ୍ତି ।

୪୪। ଗ୍ରାମ ମୁଣ୍ଡରେ ପଞ୍ଚବଟୀବନ ଓ ଶ୍ମଶାନ ଅବସ୍ଥିତ ।

୪୫। ମଣିକର୍ଣ୍ଣିକା ଘାଟରେ ଚୈତନ୍ୟଙ୍କ ମନ୍ଦିର ଓ ମୂର୍ତ୍ତିଅଛି ।

୪୬। ବୈତରଣୀର ଦକ୍ଷିଣ ବନ୍ଧଦ୍ୱାରା କୁଶଭଦ୍ରାର ମୁହଁ ପୋତିହୋଇ ନଦୀ ପୋତିହୋଇ ଯାଇଅଛି ।

୪୭। ବୈତରଣୀ ତଟରେ ଯଯାତିତୀର୍ଥ ବୋଲି ଏକ ତୀର୍ଥ ଥିଲା । ତାହାକୁ ନଦୀ ଗ୍ରାସ କରିଅଛି ।

ତୀର୍ଥ ଗଣେ ସାର ପ୍ରାସାଦ-ପୀଠ ତବ ରାଜନ
ଗଙ୍ଗା ଗୋଦାବରୀ-ପରିଧି ଦେଶ ଭକ୍ତି-ଭାଜନ ।
କାହିଁ ଥିଲା ଯେବେ ଜାଣନ୍ତୁ ସର୍ବେ ମିଳି ବିଧିରେ
ତବ ପାଦ-ସ୍ପର୍ଶ ପବିତ୍ର ଧୂଳି ଘେନନ୍ତୁ ଶିରେ ।
କାଳର କରାଳ କବଳୁ ନାହିଁ ଜିଣନ୍ତା କିଛି,
ଭକ୍ତ ଶେଷ ପୂର୍ବ ଗୌରବ ଅଯତନେ ପଡ଼ିଛି ।
ରାଣୀହଂସପୁର ନାରୀଙ୍କ ଲୋଡା ଦାସୀ ଗଡିଆ (୪୮)
ଦେଖୁଛୁ ମାତ୍ରକ ପାଇକ ଖେଳ-ଯୁଦ୍ଧ ପଡ଼ିଆ ।
ନାମ ଯାର ହାତୀ ଗଡିଆ ହସ୍ତୀ-ସ୍ନାନ ପୋଖରୀ । (୪୯)
ଯହିଁ ତହିଁ ଗଡ଼ା-ପ୍ରସ୍ତର ନାହିଁ ପାଶେ ଶିଖରୀ ।
ଚମ୍ପା କୁଞ୍ଜବେଢ଼ା ବସତି ଚମ୍ପା-ମରେଇ ନାମ । (୫୦)
ଶିବଦାସପୁର ଶିବଙ୍କ ଭକ୍ତ ଆଶ୍ରିତ ଗ୍ରାମ । (୫୧)
ନରପଦାଠାରେ ପୁଛିଲେ ଥିଲା ରାଜନବର (୫୨)
ପାଶେ ଲାଖବିନ୍ଧା ପଡ଼ିଆ ଦିଏ 'ଆସ୍ତି ଉତ୍ତର' । (୫୩)
ଭାଟବଂଶଧର ସେବିତ 'ଭଟ ସାହି' ବସତି
ଗାଉଥିଲା ରାଜ ଆଶ୍ରୟେ ଛନ୍ଦେ ପୁଣ୍ୟ କୀରତି । (୫୪)

କୁସୁମା ନାମରେ ସରସୀ ରାଜନଗରୀ ଯୋଗ୍ୟା ।
କମଳ ସମ୍ଭାରେ ହୋଇଛି ଯାହା କମଳା-ଭୋଗ୍ୟା । (୫୫)
ପକ୍ୱ ଶସ୍ୟ ପୂର୍ଣ୍ଣ କେଦାର ବେଢ଼ା ସ୍ୱଚ୍ଛ କାସାର
ରାଜଲକ୍ଷ୍ମୀଙ୍କର ବିଳାସ-ଆଦରଣ-ପ୍ରକାର ।
ସୂର୍ଯ୍ୟପୂଜା ଫଳେ ତହିଁକି ରାଜନଗରୀ ବାମା
ଆଶାୟିନୀ ଆନ ଜନମେ ହେଲେ ନଳିନୀ ରାମା ।
ସହନ୍ତି ନାହିଁ ଏ ବାମାଏ ପ୍ରିୟ ବିରହ କ୍ଷଣେ
ବାରନ୍ତି ଶୀତଳ କିରଣ-ତାପ ଗୁପ୍ତ ବଦନେ ।

---

୪୮-୫୪। ଦାସୀଗଡିଆ ଓ ହାତୀ ଗଡିଆ ନାମରେ ପୋଖରୀ, ଚମ୍ପାମରେଇ, ଶିବଦାସପୁର, ନରପଦା, ଅର୍ଥାତ୍ ନବରପଦା ଓ ଭାଟସାହି ନାମରେ ଗ୍ରାମ ଓ ଲାଖବିନ୍ଧା ପଡ଼ିଆ ଯାଜିପୁରରେ ରାଜଧାନୀ ଥିବାର ନିଦର୍ଶନ ।

୫୫। ଯାଜପୁରରେ ରାଜଧାନୀର ଉପଯୁକ୍ତା କୁସୁମା ନାମରେ ଗୋଟିଏ ବୃହତ୍ ପୋଖରୀ ଅଛି । ତାହା ସବୁବେଳେ ପଦ୍ମଫୁଲରେ ପୂର୍ଣ୍ଣଥାଏ ।

ତୁହାଇ ତୁହାଇ ଭ୍ରମର ତୁହି ଗାଞ୍ଜୁ କିପାଇଁ
ମେଲିବ କି ସତୀ ନୟନ ପ୍ରିୟ-ମୁଖ ନ ପାଇ ।
ଅଯତନେ ଛନ୍ଦା ମୃଣାଳ ମୁଖେ ମରାଳେ ଧରି
ଶ୍ରେଣୀରେ ଖେଳିବା ଶୋଭାର ନାହିଁ ଉପମାସରି ।
କମଳ-ଆକରେ କମଳା-ଅବଗାହନ ବେଳେ
ମୁକ୍ତାଜାଲ ବେଢ଼େ କି ଅବା ବକ୍ଷ-ସଂପୁଟ ଖେଳେ ।।
କଳାକରମୁଖୀ ପିନ୍ଧିବା ଶାଢ଼ୀ ଅଞ୍ଚଳ ଚଳେ
ନଳିନୀ ଦଳର ହିଲ୍ଲୋଳ ବହି ଯିବାର ଛଳେ ।
ଦିଶୁଛି ସରସୀ-ଗରଭୁ ଯେତେ ବୃକ୍ଷ-ଶିଖର
ସ୍ନାନ ସମାରୋହେ ଲକ୍ଷ୍ମୀର ତୋଳା ଶୁଣ୍ଡ ଗଜର ।
ପଲ୍ଲବ ଶ୍ରୀକର ଲମ୍ବାଇ ତୀର ପାଦପଗଣ
ଫିଙ୍ଗନ୍ତି ମର୍ମ୍ମର ମନ୍ତର ପଢ଼ି ସ୍ନାନ-ସୁମନ ।
ନାନା ବେଶେ ପକ୍ଷୀ ବନ୍ଦିଏ ଆସି ଗାଇ ମଙ୍ଗଳ
ଭରାନ୍ତି ସମ୍ପଦେଶ୍ୱରୀର ନାମେ ଗଗନ ତଳ ।
ଅରୁଣ କିରଣ ଚିତ୍ରିତ ସ୍ୱର୍ଣ୍ଣ ଛତର ତଳେ
ଦେଖି ମହାଲକ୍ଷ୍ମୀ-ବିଳାସ ବିଶ୍ୱ-ହୃଦ ତରଳେ ।
ଶିଶିର ଆକାରେ ସ୍ରବଇ ମୋଦ ନୟନ ଜଳ
ସମ୍ପାଦିଛନ୍ତି ମା ! କି ଶୋଭା ଆମ୍ଭ ରାଜନ୍ୟଦଳ ।

ଶୁଣିଛୁଁ ନର୍ତ୍ତକୀ କୁସୁମା ଧନୀ କୁସୁମହାରା
ରାଜାଦେଶେ ତଥି ଗଢ଼ିଲା ପ୍ରେମ ନିକୁଞ୍ଜ କାରା ।
ଦେଖି ନିସରଗ ମାଧୁରୀ ମହାନନ୍ଦେ ଆଦରି
ବିଳାସ ସରସୀ ରସରେ ବିଳସିଲା ସୁନ୍ଦରୀ ।
ଭଗ୍ନଶେଷ ମାତ୍ର ରହିଛି ଥିଲା ଯହିଁ ଆରାମ
ବହେ ରାଜଲକ୍ଷ୍ମୀ ଦୀର୍ଘିକା ଆଜି କୁସୁମା ନାମ । (୫୬)

---

୫୬। କଥିତ ଅଛି କୁସୁମା ନାମରେ ଗୋଟିଏ ବେଶ୍ୟା କୁସୁମା ପୋଖରୀର କେନ୍ଦ୍ର ସ୍ଥାନରେ ଗୋଟିଏ ଘର ନିର୍ମାଣ କରି ସେଠାରେ ରହିଥିଲା । ସେହିଘରର ଭଗ୍ନାବଶେଷ ବର୍ତ୍ତମାନ 'ଦୀପଦଣ୍ଡୀ' ସ୍ୱରୂପ ଅଛି ।

କାହିଁ ଗଲେ ଦେବ ପ୍ରତାପରୁଦ୍ର ରୁଦ୍ର-ପ୍ରତାପ
ବିଜୟ ନଗର ଶୂରେ ଯେ ଦେଲେ ସମରେ ତାପ ।
ବିଜୟ ନଗର ଭୂପତି ଯାର ବିକ୍ରମ ତ୍ରାସେ
ସ୍ଥାପିଲେ ସଖ୍ୟ ଯା' ସଙ୍ଗତେ ଯୁଦ୍ଧ ବିରାମ ଆଶେ । (୫୭)
ପରିହରି ଯେଉଁ ରାଜନ ତମ ସାଧନା ବଳେ
ସାତ୍ତ୍ୱିକ ଭାବରେ ମଜ୍ଜିଲେ ମହା ଦୀକ୍ଷାର ଫଳେ । (୫୮)
ମୁକୁଟକୁ ମଣି କଣ୍ଟକ ରାଜା ପ୍ରେମେ ଅଗ୍ରଣୀ
ନିଯୋଗିଲେ ବିଭୁ ସେବାରେ ଉତ୍କଳସାମ୍ରାଜ୍ୟମଣି ।
ତୋ ତୀରେ ବରାହ ପାଇଁ ମା ତୋଳାଇଲେ ମନ୍ଦିର
ଯା' ନାଟ ମନ୍ଦିର-ଗଠନ-ଛବି ଗର୍ବ ମହୀର । (୫୯)
ଏ ପୃଥ୍ୱୀ ଶୀରିକି ଢ଼ାଙ୍କିବୁ କାଳେ ତୁ ପ୍ରେମଭରେ
ଘେରାଇଛନ୍ତି ମା ରାଜନ ବନ୍ଧ ବାନ୍ଧି ପଥରେ ।
ଜଣା ଗଲାଣି ତୋ' ବାସନା ସତ୍ୟ ନରେଶ ଗୀର
ଖୋଜିଲୁଣି ଆନ ଅୟନ ଯହିଁ ନାହିଁ ପ୍ରାଚୀର ।
ଅକଠିନ ପଥ ନିରେଖି ଦେବ ଉତ୍ତର ପାଶେ
ଧୀରେ ଧୀରେ କର ପ୍ରସାରୁ କୋଳେ ଘେନିବା ଆଶେ (୬୦)

ଧର୍ମରାଜ-ନୀତି ବିରୋଧୀ ଏହି ସତ୍ୟ ଭାଷିତ
ହୋଇବ ଉତ୍କଳ ଆକାଶେ ଯୁଗେ ଯୁଗେ ଘୋଷିତ । (୬୧)
ଚୈତନ୍ୟ ଦୀକ୍ଷାରେ ପ୍ରତାପ ଯେବେ ହୋଇଲେ ବ୍ରତୀ
ସେଦିନୁ ଘୋଟିଲା ସାମ୍ରାଜ୍ୟେ ମହା ଘୋର ବିପତ୍ତି ।

---

(୫୭ ଠାରୁ ୫୯) ଓଡ଼ିଶାର ରାଜା ପ୍ରତାପରୁଦ୍ରଦେବ ବିଜୟନଗର ରାଜାଙ୍କ ସହିତ ଯୁଦ୍ଧକରି ଶେଷରେ ତାଙ୍କ ସହିତ ବୈବାହିକ ବନ୍ଧନରେ ଆବଦ୍ଧ ହୋଇଥିଲେ । ପ୍ରତାପରୁଦ୍ର ଶେଷରେ ଚୈତନ୍ୟ ଦେବଙ୍କଠାରୁ ଦୀକ୍ଷା ଗ୍ରହଣ କରି ବୈଷ୍ଣବ ହୋଇଥିଲେ । ସେ ଯାଜପୁରରେ ବରାହନାଥ ମନ୍ଦିର ସ୍ଥାପନ କରିଥିଲେ । ବରାହନାଥ ମନ୍ଦିର ନାଟ ମନ୍ଦିରର ଗଠନ ପ୍ରଣାଳୀ ଅଦ୍ୱିତୀୟ ଅଟେ ।

୬୦। ବରାହନାଥ ମନ୍ଦିର ବୈତରଣୀ ଗର୍ଭରେ ବିଲୁପ୍ତ ହୋଇଯିବା ଭୟରେ ପ୍ରତାପରୁଦ୍ର ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ବୈତରଣୀ ତଟରେ ପଥର ବନ୍ଧ ବାନ୍ଧିଥିଲେ । ମାତ୍ର ବୈତରଣୀ ନଦୀ ବର୍ତ୍ତମାନ ମନ୍ଦିରର ଉତ୍ତର ପାର୍ଶ୍ୱରେ ଏକ ନୂତନ ଧାରା ଫିଟାଇ ଆସ୍ତେ ଆସ୍ତେ ମନ୍ଦିର ଆଡ଼କୁ ଖାଇଯାଉଅଛି ।

୬୧। ପ୍ରତାପରୁଦ୍ର ବୈଷ୍ଣବ ଧର୍ମ ଗ୍ରହଣ କରି ରାଜ୍ୟଶାସନ ପ୍ରତି ବୀତସ୍ପୃହ ହେବାରୁ ରାଜ୍ୟରେ ବିପ୍ଳବ ଆରମ୍ଭ ହେଲା । ତାଙ୍କର ବଂଶଧର ଗୁପ୍ତଭାବରେ ହତ ହୋଇଥିଲେ । ବହିଃଶତ୍ରୁ ନାନାଆଡୁ ଘେରାଉ' କଲେ ।

ପରାପର ଜ୍ଞାନ ବରଜି ନରପତି ନିଶ୍ଚିନ୍ତ
ଛିଦ୍ର ଖୋଜି ହେଲେ ବିଜୟ ଆଶେ ବୈରୀ ଧାବିତ ।
ମାତ୍ର ବୈରୀ ଘାତ ପ୍ରବାତ ଉତ୍କଳରାଜ୍ୟ-ନିଶାଣ
ଛୁଇଁ ନାହିଁ ପ୍ରାଣେ ଯେ ଯାଏଁ ଥିଲେ ଓଡ଼ିଆ ରାଣ ।
ହୁଅନ୍ତେ ସ୍ୱର୍ଗତ ପ୍ରତାପ ମୂର୍ଖ ସାମନ୍ତ ଗଣେ
ବଡ଼ପଣ ଆଶେ ରଚିଲେ ଗୃହବାଦ ଆପଣେ ।
ଗୁପ୍ତ ଅସି ଘାତେ ଲିଭିଲା ବଂଶ ସୂର୍ଯ୍ୟ-ପ୍ରଭବ
ଶାସକ ବିହୀନେ ସାମ୍ରାଜ୍ୟ ହେଲା ବୀତବିଭବ ।
ତେବେଟି ବିକ୍ରମ ପ୍ରକାଶି ମା-ପୁଏ ତୋହରି
ରୋଧିଲେ ସୀମାନ୍ତେ ଖଣ୍ଡାରେ ଘୋଟି ଆସିବା ଅରି ।
ଫଟା ମହୀଷର ବିଷାଣ ଗୋଟା ସମରେ ଯେହ୍ନେ
ବିଦେଶୀ ସଙ୍ଗତେ ତୋ ପୁଏ କେତେ ଯୁଝିଲେ ତେହ୍ନେ ।

ଏସମୟେ ଆସି ମୁକୁନ୍ଦ ଛତ୍ର ପୋତିଲେ ପୁଣି
ଗଣିଲେ ବୈରୀଏ ପ୍ରମାଦ ଯାର ପ୍ରତାପ ଗୁଣି ।
ବଙ୍ଗ ଜିଣି ଗଙ୍ଗା ତଟରେ ଥାପି ତ୍ରିବେଣୀ ଘାଟ
ବୋଲାଇଲେ ବୀର ସମାଜେ ବଙ୍ଗ-ବିଜୟୀରାଟ ।
ଜଗନ୍ନାଥ ପଦେ ଅର୍ପିଛି ଓଡ଼ିଆ ତା' କୀରତି,
ତେଣୁ ଇଷ୍ଟ ଦେବ ସ୍ଥାପିଲେ ଘାଟେ ବୀର ନୃପତି । (୬୨)
ଲିଭି ଯାଉଥିବା ପ୍ରଦୀପ ଉଚ୍ଚ ଶିଖା ସମାନ
ଲଭିଲା ଅନ୍ତିମ ବିକାଶ ଉତ୍କଳ କୀର୍ତ୍ତି ନିଶାଣ ।
ମାତ୍ର ଭେଦିଥିଲା ଅନ୍ତରେ ଯେଉଁ ଝଞ୍ଜା ପବନ
ବୈରୀବାତ ନବ ସଙ୍ଗମେ ହେଲା ଦୀପ ଶମନ ।
ଅଚିହ୍ନା ବ୍ୟାଧିର ଔଷଧ ବୈଦ୍ୟ ନପାରେ କଳି
ଦେଖୁ ଦେଖୁ କାଳ କବଳେ ରୋଗୀ ପଡ଼ଇ ଢଳି ।
ଶତ୍ରୁ ବୋଲି ଯାକୁ ଜାଣିବା ତାକୁ ନ ଥାଏ ଡର

---

୬୨-୬୪। ମୁକୁନ୍ଦ ଦେବ ଉତ୍କଳ ଗୌରବ ପୁନଃ ସ୍ଥାପନ କରି ବଙ୍ଗଦେଶ ଜୟକରି ବିଜୟର ଚିହ୍ନସ୍ୱରୂପ ଗଙ୍ଗାକୂଳରେ ହୁଗୁଳି ଜିଲା ଅନ୍ତର୍ଗତ ତ୍ରିବେଣୀଠାରେ ଘାଟ ଓ ଜଗନ୍ନାଥ ମନ୍ଦିର ସ୍ଥାପନ କରିଥିଲେ । ମାତ୍ର ଦେଶମଧ୍ୟରେ ଯେଉଁ ଅନ୍ତଃଶତ୍ରୁ ଉଠିଥିଲେ ସେମାନେ ବହିଃଶତ୍ରୁ ସଙ୍ଗେ ମିଳିତ ହୋଇ ଗୁପ୍ତଭାବରେ କଳାପାହାଡ଼କୁ ଅଣାଇ ମୁକୁନ୍ଦ ଦେବଙ୍କୁ ନିହତ କରାଇଥିଲେ ।

ମିତ୍ର ପଣେ ଥାଇ ମାରେ ଯେ ତାର ଅମୋଘ ଶର ।
ଉତ୍କଳ ସାମନ୍ତ ମଣ୍ଡଳୀ ଗୁପ୍ତ ଈର୍ଷା-ଅନଳେ
ପୋଡ଼ିଲା ଉତ୍କଳ ବିଭୂତି ଅରି-ଅନିଳ ବଳେ । (୬୩)
କାଳରୂପୀ କଳି-ସେନାନୀ କଳାପାହାଡ଼ କଳା
ଆମ୍ଭରି ହସ୍ତରେ ଆମ୍ଭର ହସି କାଟିଲା ଗଳା । (୬୪)
ଗଙ୍ଗାକୂଳେ ବୀର ମୁକୁନ୍ଦ ଯୁଝୁଥିବା ସନ୍ଦେଶ
ଗୁପ୍ତେ ଶୁଣି ଅରି ନାୟକ ତୋର ତୀରେ ପ୍ରବେଶ । (୬୫)
ରଖି ଯାଇଥିଲେ ନରେଶ ଯାକୁ ଚାଷ କରମେ
ଠୁଳ ହେଲେ ଧରି ଆୟୁଧ ରାଜ୍ୟ ରକ୍ଷା ଧରମେ ।
ଧନ୍ୟ ଉତ୍ରରାଜ୍ୟ ପତିର ଦୂରଦର୍ଶୀ ବିଧାନ
ଗଢ଼ିଥିଲା ପୁରେ ପୁରେ ଯା ରଣ ବୀର ମହାନ । (୬୬)
ପର ଅତ୍ୟାଚାରୁ ରଖିବା ତୋର ପୂତ ଶରୀର
ଭାବି କେତେ ଶତ ସନ୍ତାନେ ବଳିଦେଲେ ସ୍ୱଶିର ।
ଜ୍ୱଳିଲା ତୋ କୂଳେ ଗଗନେ ଶତ ଓଡ଼ିଆ ଖଣ୍ଡା
ଗର୍ଜିଲେ ପାଇକେ ଲମ୍ଭାଇ ରଣ ଚଣ୍ଡୀଙ୍କ ଧଣ୍ଡା ।
ବାଦ୍ୟ ତଳେ ମିଶି ଲୋଟିଲା ତଳେ ବୀର ବଦନ
ଇଛିଲେ ନାହିଁ କେ ତେଜିବା ରଣ ଭୂମି କାନନ ।
ତୋ ପାଇଁ ତୋ ସୁତେ ଜୀବନ ପଣେ ପଡ଼ିଲେ ଡେଇଁ
ବିନିଦ୍ରେ ତୋ ସୁତା ଗଢ଼ିଲେ ଖଣ୍ଡା ତୋ ପାଣି ଦେଇ ।
ଷୋଳପୁର ଗଡ଼ ପାରୁଶେ ହେଲା ଶିରେ ପର୍ବତ
ମଣିନାଥପୁର ଉପାନ୍ତେ ନଦୀ ହେଲା ରକତ । (୬୭)
ଅନ୍ନକାଳେ ଶତ୍ରୁ ଆଗମେ ରୁଣ୍ଡ ଅନ୍ନ ପାଇକେ
ରାଜ୍ୟ ଧର୍ମ୍ମ ପାଇଁ ଶୋଇଲେ ଯୁଦ୍ଧ ଭୂମେ ନିର୍ଭୀକେ ।
ଗଲାଣି ସେ ଦିନ ଯେ ଦିନ ଧର୍ମ୍ମନାମେ ଏ ନରେ
ଝାସୁଥିଲେ ରଣ ଅର୍ଣ୍ଣବେ ଅକାତରେ ମୋଦରେ ।

---

୬୫। ମୁକୁନ୍ଦଦେବ ଗଙ୍ଗାକୂଳରେ ଯୁଦ୍ଧ କରୁଥିବା ସମୟରେ କଳାପାହାଡ଼ ଅନ୍ତଃଶତ୍ରୁଠାରୁ ସମ୍ବାଦ ପାଇ ଗୁପ୍ତ ପଥରେ ଆସି ଦେଶମଧ୍ୟରେ ପ୍ରବେଶ କରିଥିଲା ।

୬୬। ପୂର୍ବେ ଉତ୍କଳରେ ପ୍ରତ୍ୟେକ ଲୋକ ଯୁଦ୍ଧ ବିଦ୍ୟା ଶିଖୁଥିଲେ ।

୬୭। ଷୋଳ-ପୁର ବା ଷୋଳମ ପୁର ଓ ମଣିନାଥପୁର ଦୁଇଟି ବୈତରଣୀର ଉତ୍ତର କୂଳରେ ଖଣ୍ଡାୟତ୍‌ପ୍ରଧାନ ଗ୍ରାମ ।

ରାଜ୍ୟ ପରାଭବ ବାରତା ଶୁଣି ମୁକୁନ୍ଦ ବୀର
ଧାଇଁଲେ ଅରାତି ମର୍ଦ୍ଦନ ଆଶେ ହୋଇ ଅଧୀର ।
ଜାଣିଥିଲେ ବଙ୍ଗ-ଆହବୁ ଉତ୍କଳପତି ପ୍ରତାପ
ବହିଲେ ବିପକ୍ଷ ସେନାନୀ ହୃଦେ ଘୋର ସନ୍ତାପ ।
ଗୋହିରା ଟିକର ପ୍ରାନ୍ତରେ ଆଶାହୀନ ଆଶାରେ
ଠୁଳ କଲେ ଯହିଁ ଯେତେକ ବଳ ଲଭି କାସାରେ । (୬୮)
ମଣିଲେ ସରବେ ହୋଇବ ପରା ଭାଗ୍ୟ ପରୀକ୍ଷା
କଷିବ କଷଟି ପ୍ରାନ୍ତର ଦେଶ ପ୍ରୀତି କା' ଦୀକ୍ଷା ।
ହାରିବେ ସକଳ ସମ୍ପଦ ହାରି ଓଡ଼ିଆ ବୀର
ହାରିବା ପରାଣ ଏ ରଣେ ଆଗୁଁ କରିଲେ ସ୍ଥିର ।
ସହନ୍ତା କି ଦେଶପ୍ରେମିକ-ନେତ୍ର ଦେଶ-ପତନ
କ୍ଷତ୍ରିୟ-ଧରମେ ଅର୍ପିଲେ ତେଣୁ ସର୍ବେ ଜୀବନ ।
ହୋଇଲେ ଉତ୍କଳ ସାମ୍ରାଜ୍ୟ-ଲକ୍ଷ୍ମୀ ପଣ ଏ ରଣେ
ଯୁଝିଲେ ଓଡ଼ିଆ ପାଇକେ ଥିଲେ ଯେ ଯାଏ ଜଣେ ।
ପ୍ରାନ୍ତର ଉପାନ୍ତ ସରସୀ ବୃଦ୍ଧ ସଲିଳ ଚର
ରାବନ୍ତି ସଭୟେ ସୁମରି ଭୀମ ଦୃଶ୍ୟ ଯୁଦ୍ଧର ।
ମହାହବେ ଭେଟି ମୁକୁନ୍ଦ ଶତ୍ରୁ ସେନା-ବାହକ
ପଥକ୍ଳାନ୍ତ ସଙ୍ଗୀ ସଙ୍ଗତେ ଦେଲେ ନିଜ ମସ୍ତକ ।

ସେହି ଦିନୁ ଲୁଚି ଗଲେ ମା ! ଉତ୍କଳ ଗୌରବ-ରବି
ଗୁପ୍ତହେଲା ଉତ୍କଳ ଜନନୀ ମୁଖ ସରୋଜ ଛବି ।
ଖସି ଲିଭି ଗଲା ସେଦିନୁ ଉତ୍କଳ ଗଗନ ତାରା
ଝରୁଥିଲା ଯହୁଁ ସମ୍ପଦ ସୁଧା ସରିତ ଧାରା ।
ମଉଳି ଗଲା ମା ! ଉତ୍କଳ ରାଣୀ ସୀମନ୍ତ ମଣି
ଛପିଗଲା କାହିଁ ଶିରିମା ସୃଷ୍ଟି ସୁଷମା-ଖଣି ।
ଉଡୁ ନାହିଁ ନେତ ସେଦିନୁ ରାଜ ନବର ଶିରେ
ଧର୍ମ୍ମଧ୍ୱଜା ଏକା ଖୋଜୁଛି ସଙ୍ଗୀ ଜଳଧିତୀରେ ।

---

୬୮। ଭଦ୍ରକ ସବଡିଭିଜନର ଭଣ୍ଡାରିପୋଖରି ଥାନା ଅନ୍ତର୍ଗତରେ ଗୋହିରା ଟିକର ଗ୍ରାମ ନିକଟବର୍ତ୍ତୀ ପଡିଆରେ ମୁକୁନ୍ଦ ଦେବ କଳାପାହାଡ ସଙ୍ଗେ ଶେଷ ଯୁଦ୍ଧ କରି ନିହତ ହୋଇଥିଲେ । ସେହି ପଡିଆରେ ଏକ ପୁରୁଣା ପୋଖରୀ ଅଛି ।

ପବିତ୍ର ଶୋଣିତେ ଧଉତ ଗୋହିରାର ପ୍ରାନ୍ତର
ଘୋଷୁଛି ସେଦିନୁ କାହାଣୀ ଅତୀତର ନଶ୍ୱର ।
ଧୂଳି ଯାଚି ଶୂନ୍ୟ ଭାରତୀ ଗୁପ୍ତେ କହେ ପ୍ରାନ୍ତରେ,
ଶୀତଳ ଶୋଣିତ ତପତ କର ଉତ୍ର କୁମରେ ।
ତୁମ୍ଭ କୁରୁକ୍ଷେତ୍ର ପବିତ୍ର ତୀର୍ଥ ଏହି ପଡ଼ିଆ ।
ଯୁଦ୍ଧ ହାତ ପିତୃ ତର୍ପଣ କର ଏଥି ଓଡ଼ିଆ ।
ଚାହିଁଛନ୍ତି ଏଥି ପିତୃଏ ବସି ଅମର ସଙ୍ଗେ
କେଉଁ ଦିନ ଦେହ ଢ଼ାଳିବ ତୁମ୍ଭେ ତାଙ୍କରି ରଙ୍ଗେ ।
ବିହିବ ଯେବେ ରେ ପିତୃଙ୍କ ଶାନ୍ତି ଆତ୍ମ ସାଧନେ,
ଲଭିବ ସହଜେ ସୁଫଳ ଯାହା ତୀର୍ଥ-ଅଟନେ ।
ରଣ ଶର୍ଯ୍ୟା ବରି ମୁକୁନ୍ଦ ଯେବେ ହେଲେ ନୀରବ
ଅରାତି ସୈନିକେ ହରିଲେ ତୋର ପୂର୍ବ ବିଭବ ।

ସ୍ୱଧର୍ମ୍ମ ପାଶୋରି ମାତିଲେ ଯେବେ ବାଦେ ସୋଦରେ
ପାପୀଏ ମରିବା ମନାସି ଦେବେ ଗଲେ ଅନ୍ତରେ ।
ଦେବକଳ୍ପ ପୂଜା-ପ୍ରତିମା ଯେତେ ଥିଲେ ଉତ୍କଳେ
ଶତ୍ରୁ ଅସ୍ତ୍ରଘାତେ ବିକଳ ଅଙ୍ଗେ ପଡ଼ିଲେ ତଳେ ।
ଶରୀର ବିଜ୍ଞାନ-ବିଜ୍ଞାନୀ ତନ୍ତ୍ରୀ କୃତା ଚାମଣ୍ଡା (୬୯)
ଦେଖାଇ ଯାହାକୁ ଯାତ୍ରୀଙ୍କୁ ପେଟ ପାଳନ୍ତି ପଣ୍ଡା ।
ବାତ୍ସଲ୍ୟ ରସରେ ପଣ୍ଡିତ ଶିଳ୍ପୀ ଗଢ଼ା ବାରାହୀ
କୋଳେ ଘେନି ସ୍ନେହେ ଖେଳାଏ ଶିଶୁ ବକ୍ଷ ଫୁଲାଇ (୭୦)
ଐଶ୍ୱର୍ଯ୍ୟ ଶାଳିନୀ ଇନ୍ଦ୍ରାଣୀ କଳାବତୀ ଇନ୍ଦ୍ରାଣୀ ।
ଚମକାଏ ରାଜି ଗଜରେ ଶଚୀ ମତି ଯା ଆଣି । (୭୧)
ସ୍ୱର୍ଣ୍ଣ ଯୁଗ ଅନୁରୂପୀ ମା ! ବୀର ଗଢ଼ା ପଥରେ
ଗୟାସୁର ନାମ ଯାହାର ବିହିଅଛନ୍ତି ନରେ । (୭୨)
ଉଭା ଶୁଭ ସ୍ତମ୍ଭ ପାଷାଣେ ଗଢ଼ା କାରୁ ଜଡ଼ିତ
ମଣ୍ଡିଥିଲା କେଉଁ ଆବାସ ଖୋଜି ପାଉନାହିଁତ । (୭୩)

---

୬୯-୭୩। ଜୀବନ୍ତ ଅପୂର୍ବ କାରୁଖଚିତ ସୁବିଶାଳ ଚାମଣ୍ଡା, ବାରାହୀ, ଇନ୍ଦ୍ରାଣୀ ଓ ଗୟାସୁର ଆଦି ମୂର୍ତ୍ତି ଓ ଶୁଭସ୍ତମ୍ଭ ନାମକ ସୁବୃହତ୍ ପାଷାଣ ସ୍ତମ୍ଭ ବିକଳାଙ୍ଗ ଅବସ୍ଥାରେ ସ୍ଥାନେ ସ୍ଥାନେ ରହିଅଛି ।

ସବୁ ବର୍ଣ୍ଣିବାକୁ ନ ହେବ ସରି ଅନନ୍ତ ମଥା
ଛିନ୍ନ ଅଙ୍ଗେ ସର୍ବେ କହନ୍ତି କଳା-ପାହାଡ କଥା ।
ଅନ୍ନଦାତ୍ରୀ ପଣେ ଗୋମାତା ଅଟେ କଳପଲତା
ପୂଜେ ନିତି ହିନ୍ଦୁ ଯା ଦେହେ କଳ୍ପି ସର୍ବ ଦେବତା ।
କଳ୍ପଲତା ଗଳେ ଲାଗିଲା ଯେବେ କ୍ରୁର ଛୁରିକା
ଛାଡିଯାଇ ଶିରି ଏଦେଶୁ ନ ମିଳିଲା ଜୀବିକା ।
ଯଜ୍ଞାହୁତି ଗନ୍ଧେ ତୋ-କୂଳେ ମା ! ଜନ ଗହଳ
କାହିଁ ଲୁଚିଯାଇ ଉଠିଲା ତହିଁ ଶକୁନ କଳ ।
ଯଜ୍ଞକୁଣ୍ଡ ଭସ୍ମ ପ୍ରକ୍ଷେପେ ଶବଳିତ ଭୂତଳ
ଅସ୍ଥି କୁଢ଼େ ତୋର ତୀରେ ମା ! ଏବେ ହେଲା ଧବଳ ।
ଜୟ ମଦମତ୍ତ ପଠାଣେ ରଚି ମୋଗଲେ ବାଦ
ଭିଆଇଲେ ପ୍ରଜା ନାଶନ ପୀଡ଼ା ରାଜ୍ୟେ ଅବାଧ ।

ଦୂତ ମୁଖୁ ଶୁଣି ମୋଗଲ ଈଶ ଦୁଃଖ କାହାଣୀ
ବରଗିଲେ ଶାନ୍ତିସ୍ଥାପନେ ରାଜପୁତ ସେନାନୀ । (୭୪)
ରକ୍ଷଣେ ତୋର ମା ! ଅଗ୍ରଣୀ ଦେଖି ମାନକେଶରୀ
ଅପସରି ଗଲେ ପୀଡ଼କେ ତୋର ଜମ୍ବୁକ ପରି ।
ଉଡ଼ିନାହିଁ ମାତ୍ର ସ୍ୱାଧୀନ ବାନା ଗୋନାଶା ଚୂଳେ
ରାଜ୍ୟନାଶ ଭୟ ଛାଡ଼ିଲା କ୍ଷଣେ ଓଡ଼ିଆକୁଳେ ।
ସାଧୁ ଦିଲ୍ଲୀଶ୍ୱର ! ଦେଇଛ ଯାକୁ ଯାହା ବିହିତ
ତେଣୁ ଦରବାରେ ବରିଲ ଉତ୍କଳ କଳା ପଣ୍ଡିତ । (୭୫)
ଧର୍ମ୍ମଭୀରୁ ଉତ୍କ ରାଜନେ ଚିହ୍ନି ବନ୍ଧୁ ବେଭାରେ
ବାନ୍ଧି ରଖିଥିଲ ପୂରବ ଦେଶେ ଶାନ୍ତି ଆଶାରେ । (୭୬)

---

୭୪। ମୋଗଲ ସମ୍ରାଟ ଆକବର ଓଡ଼ିଶାରେ ପଠାଣମାନଙ୍କୁ ଦମନ କରିବା ପାଇଁ ମାନସିଂହଙ୍କୁ ପଠାଇଥିଲେ ।

୭୫। ଆକବରଙ୍କ ଦରବାରରେ ସକଳ-ବିଦ୍ୟା-ବିଶାରଦ ପଣ୍ଡିତମାନେ ଥିଲେ । ସେମାନଙ୍କ ମଧ୍ୟରେ ଓଡ଼ିଆ ସଙ୍ଗୀତ ବିଦ୍ୟାରେ ବିଶାରଦ ମହାପାତ୍ର ନାମରେ ଜଣେ ଓଡ଼ିଆ ଥିଲେ ।

୭୬। ବଙ୍ଗଦେଶରେ ପଠାଣମାନଙ୍କୁ ଆୟତ୍ତାଧୀନରେ ରଖିବା ଉଦ୍ଦେଶ୍ୟରେ ଆକବର ଉକ୍ତ ମହାପାତ୍ରଙ୍କୁ ପଠାଇ ମୁକୁନ୍ଦ ଦେବଙ୍କ ସଙ୍ଗେ ସନ୍ଧି ସ୍ଥାପନ କରିଥିଲେ । ତାହାରି ଫଳରେ ମୁକୁନ୍ଦ ଦେବଙ୍କ ପ୍ରତି ପଠାଣଙ୍କର ବିଦ୍ୱେଷ ବେଶି ହୋଇଥିଲା ।

କାହିଁ ମିତ୍ର କରି କା ସଙ୍ଗେ ସନ୍ଧି ବିଗ୍ରହ ବହି
ଏକଛତ୍ର ତଳେ ମଣ୍ଡିଲ ସାରା ଭାରତ ମହୀ ।
ଅନ୍ତକାଳେ ପୁଣି ମା ଲୋ ! ତୋର ଭାଗ୍ୟ ବଦଳ
ଗ୍ରାସିଲା ମୋଗଲ ସମ୍ରାଟେ ରାଜ୍ୟ ଦ୍ରୋହ-ଅନଳ ।

ମହାରାଷ୍ଟ୍ର ରାଜ୍ୟେ ଶୁଭିଲା ଆଦ୍ୟେ ରଣ ଚମକ
ରଣରଙ୍ଗୀ ଉତ୍ର ପାଇକେ କଲେ ଖଣ୍ଡା ଝମକ । (୭୭)
ଅବତରି ରଣ ପ୍ରାଙ୍ଗଣେ ଯେତେ ଉତ୍ର ରାଜନ
ଟେକିଲେ ପର୍ବତେ ପର୍ବତେ ସ୍ୱାଧୀନତା କେତନ ।
ସମଲାଇ ଗୁଡ଼ି ଶିଖରେ କୋହ୍ଳରମଣୀ ଚଳି
ବନ୍ଦାଇ ଦେବୀଙ୍କୁ ବିଜୟ-ବର କରିଲେ ଅଳି ।
ଅଭ୍ରଭେଦୀ ଶ୍ୟାମ ଶିଖରୀ ବେଢ଼ା ବନ୍ଧୁର ତଳେ
ମହାନଦୀ-ବକ୍ଷ ବୁଡ଼ିଲା ମୋଦ ନୟନ ଜଳେ ।
ହୀରା-ଖଣ୍ଡ-ମୌଳି-ମଣ୍ଡନ ପାଶେ କୋହ୍ଳ ପ୍ରଧାନେ
ହୀରକ କଣିକା ଭେଟିଲେ ମହୋତ୍ସବ ବିଧାନେ ।
ବୁଢ଼ୀ ସମଲାଇ ନିଶାଣ ଦେହେ ସେବକଗଣେ
ଲେଖିଲେ 'ସ୍ୱାଧୀନ' 'ସ୍ୱାଧୀନ' ଗାଢ଼େ ସିନ୍ଦୂରେ ବର୍ଣ୍ଣେ ।
ସଙ୍କେତକୁ ଦେଖି ଟେକିଲେ ସ୍ୱର୍ଣ୍ଣ-ପୁର ନୃପତି
ପାଟଣା ବାହୁକ ପ୍ରବର ରାଜ୍ୟେ ସ୍ୱାଧୀନ ଛତି ।
କଳାହାଣ୍ଡି କଳାହାଣ୍ଡିଆ ମେଘେ ଶ୍ୱେତ ଚିରାଳ
ଖେଳାଇଲା ଯେହ୍ନେ ପ୍ରାବୃଟେ ଶୋହେ ବକାଳିମାଳ ।
ପଶ୍ଚିମ ସୀମାନ୍ତ ରକ୍ଷକ ଫୁଲଝର ରାଜନ ।
ଖଡିଆଳ ପତି ଘୋଷିଲେ ସ୍ୱାଧୀନତା ବହନ ।
ସ୍ୱାଧୀନତା ଭୂତି ଲଭିଣ ଗାଙ୍ଗପୁର ଭୂପତି
ସୁନା ପରବତୁ ଅଧିକ ଲାଭ କଲେ ସମ୍ପତ୍ତି । (୭୮)

---

୭୭। ମୁକୁନ୍ଦ ଦେବଙ୍କ ପରେ ପଠାଣ ଓ ପଠାଣଙ୍କ ପରେ ମୋଗଲମାନେ କେତେକ ବର୍ଷ ଓଡ଼ିଶାରେ ରାଜତ୍ୱ କଲାପରେ ମରହଟ୍ଟା ପ୍ରଭୃତି ଶକ୍ତିମାନେ ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ସ୍ୱାଧୀନତା ଘୋଷଣା କରିଥିଲେ ।
୭୮। ଗାଙ୍ଗପୁରର ଏକ ପାହାଡରୁ ସୁନା ଆମଦାନି ହୁଏ ।

କେକୀଧ୍ୱଜ ରାଜ୍ୟମଣ୍ଡଳେ ମିଳି ସାନ୍ତାଳ ବୀରେ
ଚାଙ୍ଗୁନାଟେ ମାତି ଭରିଲେ ପୃଥ୍ୱୀ ଜୟ ଗୀତିରେ ।
ଓଡ଼ିଆ ଧୀବର ପୁଙ୍ଗବ କାଲୁରାୟ କୂମରେ
ତାମ୍ରଲିପ୍ତ ଘାଟେ ଗାଇଲେ ସ୍ୱାଧୀନତା ସାଗରେ । (୭୯)
ଭୂୟାଁ ପୀଠେ ଭୂୟାଁ ସନ୍ତାନେ କୃଷି କର୍ମ୍ମ ବରଜି
ନାଚିଲେ ସ୍ୱାଧୀନ ପ୍ରାଣରେ ମୋଦେ ଶତ୍ରୁ ତରଜି ।
ଖଞ୍ଜିବା ବେଳରେ ବେହେଲା ଯନ୍ତ୍ରେ ନବୀନ ତାର
ତାର ମିଳାଇବା କରମେ ସ୍ୱାଧୀନତା ଉଚ୍ଚାର । (୮୦)
''କହ ଲୋ ସ୍ୱାଧୀନ ସ୍ୱାଧୀନ ମୋର ପ୍ରିୟ ଶାରିକା''
ପଢ଼ାଇଲେ ପୁରନାରୀଏ ପ୍ରାତେ ଜୟ-ଗୀତିକା । (୮୧)
ମଧୁପୁର ରଣ ହର୍ଯ୍ୟକ୍ଷ ପୋଷା ତୈଲଙ୍ଗ ବୀରେ
ବିଜୟ ପଦକ ପାଇଁକି ଅଳି କଲେ ଛାମୁରେ । (୮୨)
ଢେଙ୍କାବଂଶଧରେ ମିଳିତ କପିଳାସ କନ୍ଦରେ
ଜଣାଇଲେ ଶୁଭ ବାରତା ବିଶ୍ୱେଶ୍ୱର ଶଙ୍କରେ ।
ହିଙ୍ଗୁଳାଇ ପୀଠେ ଜଳିଲା ଶିଖୀ ଉଚ୍ଚେ ରଭସେ
ସ୍ୱାଧୀନ ପ୍ରାଣର ଆବେଗେ ହବିସ୍ରୋତ ପରଶେ । (୮୩)
ଝାଡ଼-ଖଣ୍ଡଈଶ ଉଆସେ ଅଭିଷେକ ବିଧାନ
ପାଟ ହାତୀ ମିଳି ବିହନ୍ତି ହେମ କଳଶେ ସ୍ନାନ (୮୪)
ଟାଙ୍ଗି ଧନୁଶର ଆୟୁଧ କନ୍ଧ ଯୁବକଗଣ
ଦଶପଲ୍ଲା ରାଜଗୌରବ ରକ୍ଷା ଯାହାଙ୍କ ପଣ ।
ବିଦ୍ୟା ଅଭିମାନୀ ଯାହାଙ୍କୁ ମଣିଥାନ୍ତି ଶଲଭ
ସେହି ସାହସିକେ ଅର୍ଜିଲେ ସ୍ୱାଧୀନତା ଦୁର୍ଲ୍ଲଭ ।
ଦେବ ରଥପାଇଁ ପୁଳିନ୍ଦେ କାଷ୍ଠ କାଟିବାବେଳେ
ମଣିନାଗ ପାଶେ ଗାଇଲେ ଜୟ ଗୀତିକା ହେଳେ । (୮୫)

---

୭୯। କାଲୁରାୟ ନାମକ କେଉଟର ବଂଶଧରମାନେ ଓଡିଶାରୁ ଯାଇ ତାମ୍ରଲିପ୍ତ ଜୟ କରିଥିଲେ ।
୮୦/୮୧। କେନ୍ଦୁଝର ବେହେଲା ତାର ସକାଶେ ପ୍ରସିଦ୍ଧ ଥିଲା । ସେଠାରେ ବହୁତ ଶାରି ମିଳନ୍ତି ।
୮୨। ମଧୁପୁରରେ ବହୁତ ତେଲଙ୍ଗା ପାଇକ ଅଛନ୍ତି ।
୮୩। ତାଳଚେର ।
୮୪। ଅନୁଗୁଳକୁ ଝାଡ଼ଖଣ୍ଡ କୁହାଯାଏ ।
୮୫। ରଣପୁର ରଥଯାତ୍ରା ସକାଶେ ପ୍ରସିଦ୍ଧ ।
୮୬। ବାଙ୍କିରାଜ୍ୟର ଶୁକରାଣୀ ଇତିହାସ-ଖ୍ୟାତା ଅଟନ୍ତି ।

ଶୂକରାଣୀ ରାଜ୍ୟ ପାଇକେ ତୋଳି କେତନବାର
ତାଟଙ୍କଶୋଭିନୀ ଚର୍ଚ୍ଚିକା ପୀଠୁ କଲେ ହୁଙ୍କାର । (୮୬)
ଜନମିଲେ ଚନ୍ଦ୍ରଶିଖର ଯେଉଁ ରାଜ୍ୟ ମଣ୍ଡଳେ
ସେ ରାଜ୍ୟ-ସାମନ୍ତେ ଜୟାଶା ମେଣ୍ଟାଇଲେ କୌଶଳେ ।
ସିଂହାସନ କାରୁମଣ୍ଡିତ ଦନ୍ତୀ ଦନ୍ତେ ଗଢ଼ାଇ
ଭେଟିଲେ ଛାମୁରେ ସାମନ୍ତେ ଗାଇ ନିଜ ବଡ଼ାଇ । (୮୭)
ଭଞ୍ଜ କଞ୍ଜ-ପତି-ପ୍ରଭବ ମୁଗ୍ଧ ହୋଇ ସ୍ୱାଧୀନ
ସାହିତ୍ୟ ନିକୁଞ୍ଜ ବିହାରପାଇଁ ପୁଣି ସୁଦିନ । (୮୮)
କଟକ ଛଟକ ବଳିଲା ସ୍ୱାଧୀନତା ପାଳନେ
ବୁଡିଗଲା ଚଣ୍ଡୀ ଦେଉଳ ତାରକଷିଭୂଷଣେ । (୮୯)
ଦାଣ୍ଡିମାଳ ଖଣ୍ଡା ମୋଗଲେ ବନ୍ଦୀ ଯା ଏତେକାଳ ।
ଝଲସାଇ ଦେଲା ଗଗନେ ନିଜ ମୂର୍ତ୍ତି କରାଳ । (୯୦)
ଗୋଦାବରୀ ଯାଏ ଗଙ୍ଗାରୁ ଯେତେ ରାଜ ନବର
ହସିଲେ ଉଚ୍ଚାରି ସହସା ସଞ୍ଜୀବନ ମନ୍ତର ।

ମାତ୍ରକ ନ ଥିଲା ପୂରବ ଭାଗ୍ୟ ଉତ୍କ ରାଜ୍ୟର
ନଥିଲେ ରାଜନ୍ୟ ମଣ୍ଡଳୀ ମଣି ମଣ୍ଡଳେଶ୍ୱର ।
ଯେ ଯାହା ବିଭବ ଆଦରି ସ୍ୱାର୍ଥେ ବଳାଇ ଆଶ
ଅଙ୍କୁଶ ବିହୀନେ ଇଚ୍ଛିଲେ ପରଶିରୀ ବିନାଶ ।
କୋଟି କୋଟି ପୁଏ ସରବେ ସିନା ଗୋଟିଏ ଜାତି
ଏହି ମହାଭାବ ନ ଘେନି ଆତ୍ମ ଆହବେ ମାତି ।
ଆତ୍ମ-ପ୍ରତିଷ୍ଠାରେ ମଜ୍ଜିଲେ ଚାଣ୍ଡେ ଯୁଦ୍ଧ ନାୟକେ
ଉତ୍କଳୀ ମରଠ ପଠାଣେ ନାଶି ଏକୁ ଆରକେ ।
ଭାରତ ଜନନୀ-ଆହ୍ୱାନ ନ ଶୁଣିଲେ କର୍ଣ୍ଣରେ
ଭାଇରକ୍ତେ ଆସି-ତର୍ପଣ ଆଚରିଲେ ସୋଦରେ ।

---

୮୭। ଦଶପଲ୍ଲା ହାତୀ ଦାନ୍ତର ଜିନିଷ ସକାଶେ ବିଖ୍ୟାତ ।
୮୮। ଘୁମୁସର ।
୮୯। କଟକ ତାରକଷିକାମ ସକାଶେ ପ୍ରସିଦ୍ଧ ।
୯୦। ଖୁରୁଧା ସବ୍‌ଡିଭିଜନର ପ୍ରଧାନ ଅଂଶକୁ ଦାଣ୍ଡିମାଳ କୁହାଯାଏ । ଦାଣ୍ଡିମାଳରେ ବହୁତ ଖଣ୍ଡାୟତ ଅଛନ୍ତି ।

ଚିନ୍ତିଲେ ନାହିଁ କେ ମନରେ ଜନନୀର ମଙ୍ଗଳ
ନୀଚ ସ୍ୱାର୍ଥ ଆଶେ ବିହିଲେ ଅଦଭୁତ କନ୍ଦଳ ।
ଘୃଣ୍ୟ-ଭ୍ରାତୃବାଦ-କାତରା ମାତା-ନୟନ ବାରି
ହେଲା ନାହିଁ ଘେନା ନିର୍ମ୍ମମ ପ୍ରାଣେ ଢାଳେ କାହାରି ।
ସମୂହ କଲ୍ୟାଣ-ବିଧାନୀ ମାତୃ-ଅନୁ-ଶାସନ
ମଦମତ୍ତପୁତ୍ରେ ନ ଶୁଣି ହେଲେ ସ୍ୱାର୍ଥେ ମଗନ ।
ନିଜ ଦେଶ ବୋଲି ପଠାଣେ ବରିଥିଲେ ଭାରତ
ହିନ୍ଦୁ ସଙ୍ଗେ ଭ୍ରାତୃ ବେଭାରେ ହେଲେ ନାହିଁ ଯୁକତ ।
ମରହଟ୍ଟେ ଚୌଥ ଆଶାରେ ପୀଡ଼ା ଦେଲେ ଉତ୍କଳେ
ବ୍ରତୀ ହେଲେ ଉଡ୍ର ପାଇକେ ଶତ୍ରୁ ନାଶନେ ବଳେ ।
ମରହଟ୍ଟ ମେଳୁ ଅନ୍ତର ହେଲେ ଉଡ୍ର ପାଇକେ
ନ ଲୋଡିଲେ ଉଡ୍ର ମିଳନ ମରହଟ୍ଟ ଦାମ୍ଭିକେ ।
ହେଲେ ଚାଣ୍ଡେ ଭାଇ ଯୋଦ୍ଧାଏ ଭାଇ ଶିରୀ କାତର
ସହି ନ ପାରିଲେ ବିଜୟ ଦର୍ପ ଏକ ଆନର ।
ମାତାଙ୍କ କାତର ଆହ୍ୱାନ ବୀରେ ନ ଶୁଣି କର୍ଣ୍ଣେ
ଶାନ୍ତି ପଥ ତେଜି ମଜିଲେ ଶାନ୍ତି-ହର ଲୁଣ୍ଠନେ ।
ଧର୍ମ୍ମପଥ ଛାଡ଼ି ଅଧର୍ମେ ବାରେ ହୋଇଲେ ବ୍ରତୀ
ଛିଦ୍ର ଲଭି ପାପ-ପ୍ରବାଦ ଚାଣ୍ଡେ ବୁଡ଼ାଏ ମତି ।
ଜନନୀ-ଆଦେଶ-ଲଙ୍ଘନ ନିନ୍ଦ୍ୟ ସର୍ବ ଧରମେ
ଫଳିଲା ତା'ଫଳ ମା'ଲୋ ତୋର ମନ୍ଦ କରମେ ।
ଜଳିଲା ମା'ଲୋ ତୋ'ରାଜ୍ୟେ ଭ୍ରାତୃ-ଦ୍ରୋହ-ଅନଳ
ଜଳେ ସ୍ଥଳେ ଚର ଅଚର ସର୍ବେ ଦଗ୍ଧ ବିକଳ ।
ପ୍ରାଣ ରକ୍ଷାପାଇଁ ଚାଷୀଏ ହେଲେ ଅରଣ୍ୟବାସୀ
ତୋ'ସ୍ନେହ ସଜଡ଼ା ସମ୍ପଦ ହେଲା ପାଉଁଶ ରାଶି ।

ଭୀରୁ ହୀନପ୍ରଭ ଓଡ଼ିଆ ପୁଏ ଦେଖି ଆଖିରେ
ଘୋର ଅବିଶ୍ୱାସ ଗରାସେ ଆଜି ଅତୀତ ଗୀରେ ।
ଏତେ ମହାଜାତି ପତନ ଅବା କେଉଁ କାରଣେ
ଚିତି ନାହିଁ ବହୁ ବରଷ ଉଠେ ଏ ପ୍ରଶ୍ନ ମନେ ।

ଇତିହାସଖ୍ୟାତ ଗୌରବୁ ନାହିଁ ମାତର ଲେଶ,
ମାନବ ସମାଜେ ଅଗଣା ଆଜି ଓଡ଼ିଶା ଦେଶ ।
ରାଜତନ୍ତ୍ର ଯେଉଁ ଶାସନ ଯେବେ ଅଙ୍କୁଶହୀନ .
ଭାଗ୍ୟ ତାର ରାଜ-ଜୀବନ-ମରଣର ଅଧୀନ
ପ୍ରଜାକୁଳେ ତିଳେ ନ ଥାଏ ଆତ୍ମଶକତି ଜ୍ଞାନ
ହଜେ ଜଣକର ନିଦେଶ-ବଳେ ସବୁରି ଟାଣ ।
ନିଜେ ଦୁର୍ବଳ ପରଜା ଆନବଳରେ ବଳୀ
ଅପସରି ଗଲେ ଜଣକ ଚାଣ୍ଡେ ପଡନ୍ତି ଢଳି ।
ପ୍ରଜାପୁଞ୍ଜ କ୍ରୋଡୁ ଶକତି-ଦ୍ରୁମ ଯେବେ କନ୍ଦଳେ
ରାଜାଭାବେ ରାଜ୍ୟ ଛତର କେବେ ପଡ଼େ କି ତଳେ ?
ରାଜ୍ୟଛତ୍ର ଟେକି ରଖିବା ବଳ ଓଡ଼ିଆ ଗଣେ
ନ ଥିଲାରୁ ଛତ୍ର ଛିଣ୍ଡିଲା ମୁକୁନ୍ଦର ମରଣେ ।
ଛିନ୍ନଛତ୍ର ଉତ୍ର ସାମ୍ରାଜ୍ୟେ ଲୀଳାକଲେ ଅରାତି
ଅନ୍ତେ ହୀନଗତି ଭଜିଲେ ମହା ଓଡ଼ିଆ ଜାତି ।

ସ୍ୱର୍ଣ୍ଣପ୍ରସୂ ଦେଶ ଆଶାୟୀ ଆନ ବିଦେଶୀ ବଳ
ନେଲେ ରାଜ୍ୟଲକ୍ଷ୍ମୀ ଏ କାଳେ ଧୀରେ ଚାଳି କୌଶଳ ।
ଚିର ରଣରଙ୍ଗା ପ୍ରାନ୍ତରେ ବାରବାଟୀ ଅଗ୍ରତେ
ଯୁଝି ମରହଟ୍ଟେ ହାରିଲେ ବିଦେଶୀର ସଙ୍ଗତେ ।
ସମଷ୍ଟି ବିହୀନେ ହୁଅଇ ତୃଣ ଛିନ୍ନ ଯେସନ
ଅନ୍ୟ ରଣକ୍ଷେତ୍ରେ ଓଡ଼ିଆ ପରାଭୂତ ତେସନ । (୯୧)
ହସିଲା ବିଜୟୀ କେତନ ଉଡି ଗଗନ ତଳେ
ଦେଲେ ଯେଣୁ ତୋର ସନ୍ତାନେ ଛୁରୀ ଆପଣାଗଳେ ।
ଭାଇ ଭାଇ ଯେବେ ନ ମିଳି ବଢ଼େ ବିବାଦ ବ୍ୟାଧି
ଚଳିଯାଏ ହେଲେ ଅପର କରେ ସକଳ ଆଧି ।

ସୁଚତୁର ନବ ନରେଶ ଶାସନର ବିଧିରେ
ଶୁଭୁନାହିଁ ରଣ ଆୟୁଧ ରଣ ଝଣ ତୋ'ତୀରେ ।

---

୯୧। ଓଡ଼ିଶାରେ ଓଡ଼ିଆ, ପଠାଣ ଓ ମରହଟ୍ଟାମାନେ ପରସ୍ପର ଶତ୍ରୁତା ଆଚରଣ କରୁଥିବା ସମୟରେ ଇଂରାଜମାନେ ଓଡ଼ିଶା ଜୟ କରିଥିଲେ । ସେମାନେ ବାରବାଟୀଠାରେ ମରହଟ୍ଟାମାନଙ୍କୁ ଓ ଅନ୍ୟ ସ୍ଥାନରେ ଓଡ଼ିଆ ପାଇକଙ୍କୁ ପରାସ୍ତ କରିଥିଲେ ।

ଶାସନ ବିଧାନ ବିଜ୍ଞାନୀ ନବ ନୃପତିବର
ଛିନ୍ନମସ୍ତା କଲେ ଉତ୍କଳ ରାଜଲକ୍ଷ୍ମୀ ଆମ୍ଭର ।
ଖଣ୍ଡ ଖଣ୍ଡ କରି ରଖିଲେ ଅଙ୍ଗ ଭିନ୍ନ ଶାସନେ
ମୃତ ପିଣ୍ଡ ବକ୍ଷେ ଶାସିଲେ ଦୁଃଖୀ ପରଜାଗଣେ । (୯୨)
ମଉଳି ଗଲା ତୋ ପୂରବ ଶୋଭା ଉତ୍କଳ ଅଙ୍ଗେ
ଭୂଷା ସିନା ଚାରୁ ସୁନ୍ଦରୀ-ବପୁ-ସୌନ୍ଦର୍ଯ୍ୟ ସଙ୍ଗେ ।
ଅଲୋଡା ହେବାରୁ ପୂରବ ବଳ ସର୍ବେ ଅବଳ
ନାଶଇ ଯେସନ କଳଙ୍କ ଯେବେ ନ ଚଳେ କଳ ।
ହାରିଲେ ସନ୍ତାନେ ସହଜେ କ୍ଷାତ୍ର ବୀର୍ଯ୍ୟ ସାହସ
ଶାନ୍ତିନାମେ ହେଲା ଅଶାନ୍ତି ମୂଳ ଶକତି-ଧ୍ୱଂସ ।
ତୁଟିଗଲା ଆତ୍ମଶକତି ଉଦ୍ରେ ପର-ନିର୍ଭର,
ସହଜ ଲବଧ ସାମଗ୍ରୀ ଭୋଗେ ହେଲେ ତତ୍ପର ।
ଧର୍ମ୍ମଛଡ଼ା ପ୍ରଜା ବ୍ରତତୀ ରସି ନାନା ବିଳାସେ
ହେଲେ ବାନ୍ଧି କେତେ ରଙ୍ଗରେ ବୃଥା ବ୍ୟସନପାଶେ ।
ବାଣିଜ୍ୟ ଜଗତେ ଯେ ପୁଏ ତୋ'ର ଥିଲେ ମା' ଖ୍ୟାତ
ବରଜି ଜୀବିକା ଆଶ୍ରିଲେ ପଣ୍ୟ ବିଦେଶଜାତ ।
କାଟି ପିନ୍ଧି କୁଟି ଖାଇବା ନୀତି ହେଲେ ପାଶୋରି,
ଭଳି ବୃଥା ସୁଖେ ବଳିଲେ ନିଜ ଫାଶୀର ଡୋରି ।
ଲକ୍ଷ୍ମୀଛଡ଼ା ହେଲେ ଅସାର ଭୂଷା ବସନ ଆଶେ
ପେଟ କାଟି ଲକ୍ଷ୍ମୀ ପ୍ରସାଦ ବିକି ବିଦେଶୀ ପାଶେ ।
ନାହିଁ ରାଜଗଣେ ପୂରବ ବଳ ରାଜ୍ୟ-ପାଳନ,
ବିଳାସ କିଣିବାପାଇଁକି ଲୋଡ଼ା ପ୍ରଜା-ଶୋଷଣ ।
ଧରୁଥିଲା ଆଣ୍ଠେ ଯେ କର ଖଣ୍ଡା ପ୍ରଜା-ରକ୍ଷଣେ
ହୋଇଛି ମାତ୍ରକ ସେ ସାହା ବାସନାର ତର୍ପଣେ ।
ନ ବୁଝି ବିହିତ ଆଚାର କରି ଅଶିବ ରତି
ହଜାଇଛନ୍ତି ମା ! ସରବେ ଆତ୍ମରକ୍ଷା ଶକତି ।
ଶିକ୍ଷା ଆଜି ଦୀକ୍ଷା ଦେଉଛି ନୀଚ ସ୍ୱାର୍ଥସାଧନ
ଭାଇବାଦ ଅଣଆଚାରେ ରାଜ୍ୟସାରା ମଗନ ।

---

୯୨। ଇଂରାଜମାନେ ସୁବିସ୍ତୀର୍ଣ୍ଣ ଓଡ଼ିଶା ଦେଶକୁ ଭିନ୍ନ ଭିନ୍ନ ଶାସନର ଅନ୍ତର୍ଭୁକ୍ତ କରିଥିଲେ ।

ଘାରି ହେଉଛନ୍ତି ସରବେ ଅର୍ଥ କାମର ମୂଳେ
ଧର୍ମପ୍ରାଣ ହିନ୍ଦୁ ସନ୍ତାନେ ନାହିଁ ଧରମ ଠୁଳେ ।
ଚାଷୀପୁଅ ହୃଦ-ଶୋଣିତ ଦେଇ ବିଦେଶୀ କିଣି
କରୁଛୁଁ ମାତର ମା-ଙ୍କୁ ତୁଚ୍ଛ ଅଭିମାଳିନୀ ।
ଲୁଚିଅଛି ବିଦ୍ୟା ଗୌରବ ଆହା ! ପ୍ରକୃତିଗଣେ
ଅର୍ଥକରୀ ଶିକ୍ଷା ଲଭିବା ଆଶା ସବୁରି ମନେ ।
ରାଜଭାଷା ନବ ଶାସନେ ଯେଣୁ ଲାଭ-ସୋପାନ
ଲାଭ ନିକିତିରେ ସରି କି ମାତୃଭାଷାର ମାନ ?
ଉଠିଥିଲା ଆର୍ଯ୍ୟ ପବିତ୍ର କଣ୍ଠୁ ଯେଉଁ ଭାରତୀ
ହୀନାସନେ ଭାବି ଆଶାରେ ଯାଇଛି ତା କୀରତି ।
ଆମ୍ଭରି ଦୁଃଖରେ ଦୁଃଖିନୀ ନୀରସ ତୋ ଚାହାଣି
ଦେଖି ଗାଇବାକୁ ନ ବଳେ ମନ ଦୁଃଖ-କାହାଣୀ ।
ଆତ୍ମହରା ହୋଇ ମା-ଲୋ କଲୁଁ ଯେଉଁଭଳି ପାପ
ଭୋଗିଛୁଁ ତା'ଫଳେ ତୋ'ଆଗେ ଘୋର ଦୁର୍ଦ୍ଦଶା ତାପ ।

ସରି ଆସିଲାଣି ମା-ଗୋ ପ୍ରାୟଶ୍ଚିତ୍ତ ଆମ୍ଭର
ନବ ଯୁଗ ବୀଣା ଭରିଛି ଜଳ ସ୍ଥଳ ଆମ୍ବର
କୋଟି ସନ୍ତାନର ହୃଦୟ ଆଜି ଆବେଗଭର
ଲଭି ବୀଣାତାନୁ ରଭସେ ମୁକ୍ତା-ମହାମନ୍ତର ।
ଚିହ୍ନିଲାଣି ଭାଇ ଭାଇକୁ ଶନିଦଶା-ଖଣ୍ଡନେ
ନ ହେବ ଏଣିକି ଜନନୀ ! ଦୁଃଖଭୋଗ କରମେ ।
ଛିନ୍ନମସ୍ତା ପୁଣି ଉଠିବେ ତୋଳି ଶିର ଗରବେ
ନ ସହିବା ଜନେ କମ୍ପିବେ ଡରେ ଭୀଷଣ ରବେ ।
ପଢି ସଞ୍ଜିବନୀ ମନ୍ତର ବକ୍ଷ-ଅମୃତେ ପାଳି
କୋଟି ବାହୁମତୀ ରାଜିବେ ବୀର ସନ୍ତାନେ ବାଳୀ ।
ଜନନୀ-କିରୀଟ-କିରଣ ହେବ ଅଇରି ଚିତା
ହୋଇବେ ଭୁବନମୋହିନୀ ସର୍ବଗୁଣେ ଅର୍ଜିତା ।
ଲକ୍ଷ୍ମୀ ସରସ୍ୱତୀ ଖଟିବେ ପୂର୍ବ ଖଟଣି ସ୍ମରି
ଗାଇବୁ ମା-ଲୋ କଲ୍ଲୋଳ-ତାଳେ ସ୍ତୁତି ତାଙ୍କରି ।

ମଉଳିବା ତୋର ଘୁଞ୍ଚିବ ଉତ୍କଳଜନନୀ ଗଳେ
ଭାତିବ ବରାହ ମନ୍ଦିର ହାର-ପଦକ ଛଳେ ।
ଯାଇଥିଲା ଦିନ ଫେରିବ ଆଉ ବିଳମ୍ବ ନାହିଁ
ତପଫଳ ତୋର ଏଡ଼ିବା ଶକ୍ତି ଜଗତେ କାହିଁ ?
ପୋଡିଅଛି ସୁନାସନ୍ତାନେ ଅଗ୍ନି ହୋଇ କଦନ
ଭେଲ ଛାଡ଼ିଯାଇ ସରବେ ଶୁଦ୍ଧ ତପ୍ତ କାଞ୍ଚନ ।
ସ୍ୱର୍ଣ୍ଣ ଅଳଙ୍କାର ଗଢ଼ିବେ ଏବେ ବିଶ୍ୱ-ବିନ୍ଧାଣି
ଅଚିରେ ଦେଖିବ ଜଗତ ଅପଲକେ ସେ ଠାଣି ।

ଧରମର ଗତି କୁଟିଳା ଏହା ବିଧି-ବିଧାନ
ଧାର୍ମିକା ହୋଇ ତୁ ସହିଲୁ ତେଣୁ କ୍ଳେଶ ମହାନ ।
ଦୁଃଖ ବୋଲୁଁ ଯାକୁ ପ୍ରାଣୀଙ୍କ ହୃଦ-ନିକଷ ତାହା
ଦୁଃଖୀ ଦୁଃଖପୂର୍ଣ୍ଣ ହୃଦୟେ ତୁଷ୍ଟ କଲ୍ୟାଣନାହା ।
ଭାଗ୍ୟ ମନ୍ଦବେଳେ ଅଖଣ୍ଡ ତପ ସାଧନ ଫଳେ
ଫେରିବ ମା-ଲୋ ତୋହର ପୂର୍ବ ସମ୍ପଦ ବଳେ ।
ସଦାକାଳେ ଚାହିଁରହିଛୁ ଅନନ୍ତର ବଦନେ
ପଢ଼ି ଭାଗ୍ୟଲିପି ତହିଁକି ଅଛୁ ଅଟଳ ମନେ ?
କାଳହସ୍ତେ ତୋର କୀରତି ଛୁଇଁ ନାହିଁ କାଳିମା
ଗାଉଥିବ ହିନ୍ଦୁ ସତତ ବୈତରଣୀ-ଗରିମା ।
ଦେବପ୍ରାଣେ ! ଦେବଶରୀରେ ! ଦେବପ୍ରିୟେ ! ଗୋ ନଈ !
କୋଟି ସୁତ ସଙ୍ଗେ ଚରଣେ ଭକ୍ତିଭରେ ନମଇଁ ।
ତୋହରି ପାଳିତ ଉଦ୍ୟାନ ଫୁଲେ ଗୁନ୍ଥିଛି ହାର
ଘେନାକର ସ୍ନେହମୟୀ ଗୋ ! ନାହିଁ ନିଜ ସମ୍ଭାର ।
ରହଣି ତୋର ଗୋ ଜନନୀ ! ବିଶ୍ୱପ୍ରଭୁ ଗହଣେ
ସନ୍ତାନ-କଲ୍ୟାଣ କାମନା ରାଜୁ ଦିବ୍ୟ ସୁମନେ ।
ରସାଇ ଦେ ମା - ଗୋ ହୃଦୟ ତୋର ସ୍ୱର୍ଗୀୟ ରସେ
ଗାଏ ମୁଁ ତୋ'ସଙ୍ଗେ ଶାଶ୍ୱତ ଯଶ ତୋ'ଭାବବଶେ ।
ବହିଯାଉ ତୋର ରାଇଜେ ସ୍ୱର୍ଗ-ଅମୃତ-ଧାର
ପାଇ ଚରାଚର ହୁଅନ୍ତୁ ବିଶ୍ୱ- ସୁଷମାଗାର ।

— ସମାପ୍ତ —